# ଉପସଂହାର



ଶ୍ରୀ ବିଶ୍ୱନାଥ କର, 'ଦରଦୀ'

[ଓଡ଼ିଶା ଶିକ୍ଷାବିଭାଗର ନିର୍ଦ୍ଦେଶକ ମହୋଦୟଙ୍କ ୧୪୦୪୮ ତାରିଖ ୧୧-୮-୫୫ ଆଦେଶପତ୍ରରେ ଉକ୍ତ ପୁସ୍ତକର ପ୍ରଥମ ସଂସ୍କରଣ ଗ୍ରନ୍ଥର ସମସ୍ତ ଶିକ୍ଷାନୁଷ୍ଠାନମାନଙ୍କର ପାଠାଗାର ଓ ପୁରସ୍କାର ନିମନ୍ତେ ସ୍ୱୀକୃତ ।]

---

ମହାକବି କାଳିଦାସ ବିରଚିତ

# ଋତୁସଂହାର

[ପରିବର୍ଦ୍ଧିତ ଦ୍ୱିତୀୟ ସଂସ୍କରଣ]

ଲେଖକ
ଶ୍ରୀବିଶ୍ୱନାଥ କର 'ଦରଦୀ'

ପ୍ରକାଶକ
ବିଦ୍ୟାପୁରୀ
ବାଲୁବଜାର, କଟକ-୨

ଲେଖକ:
ଶ୍ରୀବିଶ୍ୱନାଥ କର, ବି. ଏ., କୋବିଦ 'ଦରୁଦ'
ଜୟଗୁରୁ ପ୍ରତିଷ୍ଠାନ, ଚଉଦ୍ୱାର; ଜି। କଟକ

ପ୍ରକାଶକ:
ଶ୍ରୀପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ-୨

ପ୍ରକାଶକାଳ:
ପ୍ରଥମ ସଂସ୍କରଣ-ତା୨-୭-୫୮
ଦ୍ୱିତୀୟ ସଂସ୍କରଣ-ତା୧୫-୧୨-୬୭

ପ୍ରଚ୍ଛଦପଟ ଶିଳ୍ପୀ:
ଶ୍ରୀ କାଶୀନାଥ ଜେନା

ମୁଦ୍ରାକର:
ଗୋସ୍ୱାମୀ ପ୍ରେସ, କଟକ-୨

ମୂଲ୍ୟ—ତିନଟଙ୍କା

## ସୂଚନା

ଋତୁସଂହାର, ମହାକବି କାଳିଦାସଙ୍କ ରଚିତ ଏକ ଖଣ୍ଡକାବ୍ୟ । ଗ୍ରୀଷ୍ମଠାରୁ ବସନ୍ତ ପର୍ଯ୍ୟନ୍ତ ଛଅଟି ଋତୁର ସୌନ୍ଦର୍ଯ୍ୟ ଓ ତାର ଉପଭୋଗ ବିଷୟରେ କୌଣସି ପ୍ରେମିକ ତାର ପ୍ରିୟାକୁ ବୁଝାଇବାରେହିଁ ଏହି କାବ୍ୟର ବିଶେଷତ୍ୱ । ଛଅଟି ଋତୁ, ଛଅଟି ସର୍ଗରେ ବିଭକ୍ତ ଓ ବିଭିନ୍ନ ବୃତ୍ତରେ ରଚିତ । ଗିରି ନିର୍ଝରିଣୀ ପରି ଭାବୁକ କାଳିଦାସଙ୍କ ଭାବନା ପ୍ରଖରବେଗରେ ତରଙ୍ଗ ରଚନା କରି ସତେ ଯେପରି ଧାବମାନା ।

---

## ଏଇ ଲେଖକଙ୍କର ଲେଖନୀ-ନିସୃତ

କବିତା :

ବିରହ-ବାନ୍ଧବୀ, ପଲ୍ଲୀ-ପ୍ରୀତି, ଜଳତରଙ୍ଗ

କାବ୍ୟ :

ମିଳନ-ମାଧୁରୀ, ସତୀର ଶକ୍ତି

ଅନୁବାଦ :

ରତ୍ନରେଣୁ, ଋତୁସଂହାର, ଗୀତ-ନିର୍ଝରିଣୀ,
ଅଞ୍ଜଳି, ମଣିରତ୍ନମାଳା, ହଂସଦୂତ

ସଙ୍ଗୀତ :

ଗୀତଗଣିତ, ଶ୍ରୀକପାଳେଶ୍ୱର ଚଉତିଶା

ଟୀକା ସଙ୍କଳନ :

ସଟୀକ ସମକରାଜ ଚଉତିଶା

ଭ୍ରମଣ କାହାଣୀ :

ଦେଶ ଦର୍ଶନ

## ପ୍ରସ୍ତୁତ ପଥେ —

କ୍ଷୁଦ୍ର ଗଳ୍ପ :

ମାଟି ଲୁହେ ମା

ଉପନ୍ୟାସ :

ଅଭାଗିନୀର ଅଶ୍ରୁ

କବିତା :

କଳ୍ପନା କୁଞ୍ଜେ କବି

# ଗୁରୁ ବନ୍ଦନା

ଅଜ୍ଞାନ-ତିମିରାନ୍ଧସ୍ୟ
ଜ୍ଞାନାଞ୍ଜନ-ଶଳାକୟା,
ଚକ୍ଷୁରୁନ୍ମୀଳିତଂ ଯେନ
ତସ୍ମୈ ଶ୍ରୀ ଗୁରବେ ନମଃ ।

ମୋର ସ୍ୱର୍ଗତ ପିତାମହ ତଥା ବାଲ୍ୟଗୁରୁ କୃପାସିନ୍ଧୁ କରଙ୍କ ଉଦ୍ଦେଶ୍ୟେ.........

## ନିଜକଥା—

ଋତୁସଂହାର ମହାକବି କାଳିଦାସ ବିରଚିତ ଏକ ଖଣ୍ଡ-କାବ୍ୟ । ଗ୍ରୀଷ୍ମଠାରୁ ବସନ୍ତ ପର୍ଯ୍ୟନ୍ତ ଛଅଟି ଋତୁର ବର୍ଣ୍ଣନା ବିଷଦ ଭାବେ ଏଥିରେ ଫୁଟି ଉଠିଛି । ଋତୁଚକ୍ରର ଘୂର୍ଣ୍ଣନ ଫଳରେ ପ୍ରକୃତିର ବିଭିନ୍ନ ରୂପ ସଜ୍ଜା, ପ୍ରଣୟୀ—ପ୍ରଣୟିନୀ-ମାନଙ୍କର ଉପଭୋଗ୍ୟ ବସ୍ତୁ, ବିଭିନ୍ନ ପୁଷ୍ପ ଫଳମାନଙ୍କର ଉଦ୍‌ଗମ ପ୍ରଭୃତି ଏଥିରେ ବର୍ଣ୍ଣିତ । ପାଠକ ପାଠିକାମାନଙ୍କର ଆଗ୍ରହ ଦେଖି ଏହାର ଦ୍ୱିତୀୟ ସଂସ୍କରଣରେ ବ୍ରତୀ ହେଲି କାରଣ ଏହାର ପ୍ରଥମ ସଂସ୍କରଣ ବର୍ଷକ ମଧ୍ୟରେ ଶେଷ ହୋଇଥିଲା ।

କଟକ ଖ୍ରୀଷ୍ଟକଲେଜର ସଂସ୍କୃତ ଅଧ୍ୟାପକ ଶ୍ରୀ ରଙ୍ଗାଧର ଷଡ଼ଙ୍ଗୀ, ଏମ୍. ଏ. (ବାରାଣସୀ) ଉକ୍ତ ପୁସ୍ତକ ପ୍ରକାଶନରେ ଅନେକ ସନ୍ଦେହ ମୋଚନ କରି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରିଛନ୍ତି । ମୋର ବନ୍ଧୁ, ବିଦ୍ୟାପୁରୀର ସ୍ୱତ୍ୱାଧିକାରୀ ଶ୍ରୀ ପୀତାମ୍ବର ମିଶ୍ର ଉକ୍ତ ପୁସ୍ତିକା ପ୍ରକାଶନରେ ଆଗ୍ରହ ପ୍ରକାଶ କରିଥିବାରୁ ମୁଁ ତାଙ୍କ ପ୍ରତି ଆନ୍ତରିକ ଶ୍ରଦ୍ଧା ଜଣାଉଛି ।

ମୋର ଶିଳ୍ପୀ ବନ୍ଧୁ ଶ୍ରୀ କାଶୀନାଥ ଜେନା ପ୍ରଚ୍ଛଦପଟ ଚିତ୍ରଟି ଅଙ୍କନ କରି ମୋତେ କୃତଜ୍ଞତା ପାଶରେ ଆବଦ୍ଧ କରିଛନ୍ତି ।

ପାଠକ ପଠିକାମାନେ ଏହା ପାଠ କରି କ୍ଷଣିକ ଆନନ୍ଦ ଉପଲବ୍ଧି କଲେ ଶ୍ରମସାର୍ଥକ ମନେ କରିବି । ଇତି ।

ବିନୀତ

**ଲେଖକ**

# ମହାକବି କାଳିଦାସ

ମହାକବି କାଳିଦାସଙ୍କ କାଳନିର୍ଣ୍ଣୟ, ଜନ୍ମସ୍ଥାନନିର୍ଣ୍ଣୟ ଐତିହାସିକ ବିଚାର ତଥା ରଚିତ ଗ୍ରନ୍ଥ ବିଷୟରେ ସର୍ବଦା ମତ-ଦ୍ୱୈଧ ପରିଲକ୍ଷିତ ହୁଏ । କାଳିଦାସ ନିଜେ ତାଙ୍କର କାବ୍ୟ କବିତାରେ ଏ ବିଷୟରେ କୌଣସି ସ୍ପଷ୍ଟୋଲ୍ଲେଖ ନ କରିଥିବାରୁ ଏ ସବୁ ବିଷୟରେ ସମ୍ୟକ୍ ଜ୍ଞାନ ଲାଭ କରିବା ପାଠକ ପକ୍ଷରେ ଏକ ଦୁରୂହ ବ୍ୟାପାରରୂପେ ପ୍ରତୀୟମାନ ହୁଏ । ତଥାପି ପଣ୍ଡିତ-ମାନେ ବହୁ ଗବେଷଣା ଫଳରେ ତାଙ୍କର ରଚନାବଳୀ ତଥା ତାଙ୍କ ପରବର୍ତ୍ତୀ କବିମାନଙ୍କର କୃତିରୁ ତାଙ୍କ ବିଷୟରେ କେତେକ ତଥ୍ୟ ଆହରଣ କରି ପାଠକ ତଥା ଆଲୋଚକ-ମାନଙ୍କ ପିପଠିଷା ପୂରଣ କରିଛନ୍ତି ।

**କାଳନିର୍ଣ୍ଣୟ:**— କାଳିଦାସଙ୍କର କାଳନିର୍ଣ୍ଣୟ ନିମନ୍ତେ ପଣ୍ଡିତମାନେ ବହୁ ଗବେଷଣା ଫଳରେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ ସେ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱରେ କାଳାତିପାତ କରିଥିଲେ । ଦ୍ୱିତୀୟ ଚନ୍ଦ୍ରଗୁପ୍ତ ଖ୍ରୀ ୩୮୦ ରୁ ୪୧୩ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଏଣୁ କାଳିଦାସ ଚତୁର୍ଥ ଶତାବ୍ଦୀର ଶେଷଭାଗ ଓ ପଞ୍ଚମ ଶତାବ୍ଦୀର ପ୍ରଥମ ଭାଗରେ ଜୀବିତ ଥିଲେ । ବିକ୍ରମୋର୍ବଶୀୟ ନାଟକରେ ସେ ବିକ୍ରମାଦିତ୍ୟଙ୍କର ଗୁଣାବଳୀ ବର୍ଣ୍ଣନ କରିଛନ୍ତି । ଚନ୍ଦ୍ରଗୁପ୍ତଙ୍କର ପୁତ୍ର କୁମାରଗୁପ୍ତଙ୍କର ନାମାନୁସାରେ ସେ କୁମାରସମ୍ଭବ କାବ୍ୟ ରଚନା କରିଛନ୍ତି ବୋଲି କେତେକ ଆଲୋଚକ ମତ ବ୍ୟକ୍ତ କରନ୍ତି । ଆଦ୍ଭୁତ

ମଧ୍ୟ କାଳିଦାସଙ୍କର ଭାବଧାରା କବି ଅଶ୍ୱଘୋଷଙ୍କର ରଚନାରେ ପରିଦୃଷ୍ଟ ହୁଏ । କାଳିଦାସ କୁମାରସମ୍ଭବର ସପ୍ତମ ଅଧ୍ୟାୟରେ ଲେଖିଛନ୍ତି—

ତାସାଂ ମୁଖୈରାସବଗନ୍ଧଗର୍ଭୈ
ର୍ବ୍ୟାପ୍ତାନ୍ତରାଃ ସାନ୍ଦ୍ରକୁତୂହଳାନାମ୍ ।
ବିଲୋଲନେତ୍ରଭ୍ରମରୈର୍ଗବାକ୍ଷାଃ
ସହସ୍ରପତ୍ରାଭରଣା ଇବାସନ ।
କୁମାରସମ୍ଭବ—୭/୬୨

—ପ୍ରବଳ କୁତୂହଳପୂର୍ଣ୍ଣ କାମିନୀମାନଙ୍କର ମଦ୍ୟଗନ୍ଧ-ସୁରଭିତ ଓ ଭ୍ରମରସଦୃଶ ଚଞ୍ଚଳନେତ୍ରଯୁକ୍ତ ମୁଖମାନଙ୍କ ଦ୍ୱାରା ଗବାକ୍ଷମାନ ପଦ୍ମଗୁଡ଼ିକ ଦ୍ୱାରା ଭୂଷିତ ହେଲାପରି ଶୋଭା ପାଉଥିଲା ।

ଅଶ୍ୱଘୋଷ ତାଙ୍କର 'ବୁଦ୍ଧଚରିତ'ରେ ଏହିଭଳି ବର୍ଣ୍ଣନା କରିଛନ୍ତି—

ବାତାୟନେଭ୍ୟସ୍ତୁ ବିନଃସୃତାନି
ପରସ୍ପରୋପାସିତକୁଣ୍ଡଳାନି
ସ୍ତ୍ରୀଣାଂ ବିରେଜୁର୍ମୁଖପଙ୍କଜାନି
ସକ୍ତାନି ହର୍ମ୍ୟେଷ୍ୱିବ ପଙ୍କଜାନି ।
ବୁଦ୍ଧଚରିତ—୩/୧୯

—ଗବାକ୍ଷମାନଙ୍କରୁ ବାହାରକୁ ବାହାରିଥିବା ପରସ୍ପର ମିଳିତ କୁଣ୍ଡଳମାନଙ୍କରେ ବିରାଜମାନ ସ୍ତ୍ରୀମାନଙ୍କର ମୁଖକମଳ ହର୍ମ୍ୟମାନଙ୍କର ସଂଲଗ୍ନକମଳ ପରି ଶୋଭା ପାଉଥିଲା ।

କାଳିଦାସଙ୍କ ରଘୁବଂଶର ୩ୟ ସର୍ଗସ୍ଥିତ ଚତୁର୍ଦ୍ଦଶ ଶ୍ଳୋକ ଅଶ୍ୱଘୋଷଙ୍କ ବୁଦ୍ଧଚରିତର ପ୍ରଥମ ସର୍ଗର ଏକଚତ୍ୱାରିଂଶ ଶ୍ଳୋକ ସହ କେତେକାଂଶରେ ମିଳିତ ହୁଏ ।

ଦିଶଃ ପ୍ରସେଦୁର୍ମରୁତୋ ବବୁଃ ସୁଖାଃ
ପ୍ରଦକ୍ଷିଣାର୍ଚ୍ଚିର୍ହବିରଗ୍ନିରାଦଦେ
ବଭୂବ ସର୍ବଂ ଶୁଭଶଂସି ତତ୍‌କ୍ଷଣଂ
ଭବୋ ହି ଲୋକାଭ୍ୟୁଦୟାୟ ତାଦୃଶାମ୍ ।
ରଘୁବଂଶ—୩/୧୪

ବାତା ବବୁଃ ସ୍ପର୍ଶସୁଖା ମନୋଜ୍ଞା
ଦିବ୍ୟାନି ବାସାଂସ୍ୟବପାତୟନ୍ତଃ ।
ସୂର୍ଯ୍ୟଃ ସ ଏବାଭ୍ୟଧିକଂ ଚକାଶେ
ଜଜ୍ୱାଲ ସୌମ୍ୟାର୍ଚ୍ଚିରନୀରିତୋଽଗ୍ନିଃ ॥
ବୁଦ୍ଧଚରିତ—୧/୪୧

—ସ୍ପର୍ଶସୁଖରେ ପବନ ଦେବାଙ୍ଗନାମାନଙ୍କ ବସ୍ତ୍ରାଞ୍ଚଳମାନ ବିଲୁଳିତ କରି ମନୋହର ଭାବରେ ବହିବାକୁ ଲାଗିଲା । ସୂର୍ଯ୍ୟ ଅଧିକ ତେଜରେ ପ୍ରକାଶ ପାଇଲେ । ସମିଧାଦି ଦ୍ୱାରା ସମେଧିତ ନ ହେଲେ ମଧ୍ୟ ଅଗ୍ନି ସୌମ୍ୟଜ୍ୱାଳାବିଶିଷ୍ଟ ହୋଇ ଜଳି ଉଠିଲେ ।

କାଳିଦାସଙ୍କ 'କୁମାରସମ୍ଭବର ଶ୍ଳୋକ ସହ ଅଶ୍ୱଘୋଷଙ୍କର ଶ୍ଳୋକର ମଧ୍ୟ ବହୁ ସାମଞ୍ଜସ୍ୟ ଦେଖାଯାଏ । ଯଥା—

ତଂ ବୀକ୍ଷ୍ୟ ବେପଥୁମତୀ ସରସାଙ୍ଗଯଷ୍ଟି-
ର୍ନିକ୍ଷେପଣାୟ ପଦମୁଦ୍ଧୃତମୁଦ୍‌ବହନ୍ତୀ ।
ମାର୍ଗାଚଳବ୍ୟତିକରାକୁଳିତେବ ସିନ୍ଧୁଃ
ଶୈଳାଧିରାଜତନୟା ନ ଯଯୌ ନ ତସ୍ଥୌ ।
କୁମାରସମ୍ଭବ— ୫/୮୫

ତାଙ୍କୁ ଦେଖି ତାଙ୍କ ଅଙ୍ଗ କମ୍ପି ଉଠିଲା । ଶରୀର ସରସ ହୋଇ ଉଠିଲା । ଆଗକୁ ଯିବା ଲାଗି ଟେକି ଥିବା ପାଦ ସେ ଆଉ ଆଗକୁ ପକାଇ ପାରିଲେ ନାହିଁ । ମାର୍ଗ ମଧ୍ୟରେ ପର୍ବତ ଅବରୋଧରେ ଆକୁଳିତ ନଦୀପରି ପାର୍ବତୀ ଯାଇ ପାରିଲେ ନାହିଁ କି ରହି ପାରିଲେ ନାହିଁ ।

ଏହିପରି ରଚନା ଅଶ୍ୱଘୋଷଙ୍କର ସୌନ୍ଦରାନନ୍ଦରେ ପରିଦୃଷ୍ଟ ହୁଏ ।

ତଂ ଗୌରବଂ ବୁଦ୍ଧଗତଂ ଚକର୍ଷ
ଭାର୍ଯ୍ୟାନୁରାଗଃ ପୁନରାଚକର୍ଷ ।
ସୋଽନିଶ୍ଚୟାନ୍ନାପି ଯଯୌ ନ ତସ୍ଥୌ
ତରଂସ୍ତରଙ୍ଗେଷ୍ୱିବ ରାଜହଂସଃ ।
ସୌନ୍ଦରାନନ୍ଦ— ୪/୪୨

—ବୁଦ୍ଧଙ୍କ ପ୍ରତି ତାଙ୍କର ଗୌରବବୁଦ୍ଧି ତାଙ୍କୁ ସଂସାରରୁ ଟାଣି ନେଉଥିଲା । ମାତ୍ର ନିଜ ପ୍ରିୟତମାର ପ୍ରେମବନ୍ଧନ ତାଙ୍କୁ

ସଂସାରକୁ ଟାଣି ଆଣୁଥିଲ । ସେ କୌଣସି ବିଷୟ ସ୍ଥିର କରି ନପାରି ତରଙ୍ଗମଧ୍ୟବର୍ତ୍ତୀ ରାଜହଂସ ପରି ଯାଇ ପାରିଲେ ନାହିଁ କି ରହି ପାରିଲେ ନାହିଁ ।

କାଳିଦାସଙ୍କ ରଘୁବଂଶର ଶ୍ଳୋକ ସହ ଅଶ୍ୱଘୋଷଙ୍କ ବୁଦ୍ଧଚରିତର ଶ୍ଳୋକର ମେଳ ଦେଖାଯାଏ । ଯଥା—

ଏକାତପତ୍ରଂ ଜଗତଃ ପ୍ରଭୁତ୍ୱ
ନବଂ ବୟଃ କାନ୍ତମିଦଂ ବପୁଶ୍ଚ
ଅଳ୍ପସ୍ୟ ହେତୋର୍ବହୁ ହାତୁମିଚ୍ଛନ୍
ବିଚାରମୂଢ଼ଃ ପ୍ରତିଭାସି ମେ ତ୍ୱମ୍ ।
ରଘୁବଂଶ—୨/୪୭

—ଏକଛତ୍ର ତ୍ରିଭୁବନ ସାମ୍ରାଜ୍ୟ ନବୀନ ବୟସ, ଏବଂ କାନ୍ତିମାନ୍ ଶରୀରକୁ ଏହି ସାମାନ୍ୟ ଗାଈକୁ ରକ୍ଷା କରିବା ଲାଗି ବଳି ଦେବାକୁ ଇଚ୍ଛା କରୁଛ । ଏଣୁ ତୁମେ ମୋ ବିଚାରରେ ବିବେକଶୂନ୍ୟ ପରି ମନେ ହେଉଛ ।

ଆଦିତ୍ୟପୂର୍ବଂ ବିପୁଳଂ କୁଳଂ ତେ
ନବଂ ବୟୋ ଦୀପ୍ତମିଦଂ ବପୁଶ୍ଚ
କସ୍ମାଦିୟଂ ତେ ମତିରକ୍ରମେଣ
ଭୈକ୍ଷକ ଏବାଭିରତା ନ ରାଜ୍ୟେ ।
ବୁଦ୍ଧଚରିତ—୧୦/୪

—ସୂର୍ଯ୍ୟବଂଶ ପରି ମହାକୁଳରେ ତୁମର ଜନ୍ମ, ନବୀନ ବୟସ ଓ କାନ୍ତିମାନ୍ ଶରୀର । ତଥାପି ତୁମର ବୁଦ୍ଧି ରାଜ୍ୟରେ

ଆସକ୍ତ ନ ହୋଇ ଏ ଭିକ୍ଷାବୃତ୍ତିରେ ଅସଙ୍ଗତ ରୂପେ ଆସକ୍ତ ହେଲ କପର ?

ଉପରୋକ୍ତ ବର୍ଣ୍ଣନାମାନଙ୍କରୁ ସ୍ପଷ୍ଟ ଅନୁମିତ ହୁଏ ଯେ କାଳିଦାସଙ୍କର ରଚନାରେ ଲାଳିତ୍ୟ ଓ ଅଶ୍ୱଘୋଷଙ୍କର ରଚନାରେ ଦାର୍ଶନିକତା ଦେଖାଯାଏ ।

କାଳିଦାସ ବରାହମିହିରଙ୍କର ସମସାମୟିକ ଥିଲେ ବୋଲି ମଧ୍ୟ ପ୍ରମାଣ ମିଳେ । ବରାହମିହିର ତାଙ୍କ ବୃହତ୍‌ସଂହିତାଗ୍ରନ୍ଥ-ଗ୍ରନ୍ଥରେ ଲେଖିଛନ୍ତି ।

ଭୂଚ୍ଛାୟଂ ସ୍ୱଗ୍ରହଣେ ଭାସ୍କରମର୍କଗ୍ରହେ
ପ୍ରବିଶତୀନ୍ଦୁଃ ।

ଏହି ମର୍ମରେ କାଳିଦାସ ଲେଖିଛନ୍ତି—

ଛାୟା ହି ଭୂମେଃ ଶଶିନୋ ମଳତ୍ୱେ
ନାରୋପିତା ଶୁଦ୍ଧିମତଃ ପ୍ରଜାଭିଃ
ରଘୁବଂଶ—୧୪/୪୦

ଆଉମଧ୍ୟ ବରାହମିହିର ତାଙ୍କର ବୃହତ୍‌ସଂହିତା ଚନ୍ଦ୍ର-ଗ୍ରନ୍ଥରେ ଲେଖିଛନ୍ତି—

ସଲିଳମୟେ ଶଶିନି ରବେର୍ଦୀଧିତୟୋ
ମୂର୍ଚ୍ଛିତାସ୍ତମୋ ନୈଶମ୍ ।

ଏହାର ଅବଲମ୍ବନରେ କାଳିଦାସ ଲେଖିଛନ୍ତି

ପୁପୋଷ ବୃଦ୍ଧିଂ ହରିଦଶ୍ୱଦୀଧିତେ-
ରନୁପ୍ରବେଶାଦିବ ବାଳଚନ୍ଦ୍ରମାଃ ।
ରଘୁବଂଶ —୩/୨୨

ବାତ୍ସାୟନଙ୍କ କାମସୂତ୍ରକୁ କାଳିଦାସ ସମ୍ୟକ୍‌ରୂପେ ଅଧ୍ୟୟନ କରିଥିବାର ମନେହୁଏ । କାରଣ ବାତ୍ସାୟନଙ୍କ କାମ-ସୂତ୍ରର ଶ୍ଲୋକ—

ଶ୍ୱଶ୍ରୂ ଶ୍ୱଶୁରଚରଣପରତା ତତ୍ପରତନ୍ତ୍ୟମନୁତ୍ତରବାଦିତା—
ଭୋଗେଷ୍ୱନୁତ୍ସେକଃ— ପରିଜନେ ଦାକ୍ଷିଣ୍ୟମ୍— ନାୟକା-
ପରିଚରେଷୁ କଞ୍ଚିତ୍ କଳୁଷତା ନ ତ୍ୟର୍ଥଂ ଭବଦେତ୍ ।

ବାତ୍ସାୟନ କାମସୂତ୍ର ୨୩୯/ପୃ ୨୩୭

ଏହି ମର୍ମରେ କାଳିଦାସ ତାଙ୍କର ଅଭିଜ୍ଞାନ ଶାକୁନ୍ତଳରେ ମହର୍ଷି କଣ୍ୱଙ୍କ ମୁଖରେ ଶକୁନ୍ତଳାକୁ ଉପଦେଶ ଦାନ ଛଳରେ ଉକ୍ତ ରୀତ କରାଇଛନ୍ତି—

ଶୁଶ୍ରୂଷସ୍ୱ ଗୁରୂନ କୁରୁ ପ୍ରିୟସଖୀବୃତ୍ତିଂ ସପତ୍ନୀଜନେ
ଭର୍ତ୍ତୁର୍ବିପ୍ରକୃତାଽପି ରୋଷଣତୟା ମା ସ୍ମ ପ୍ରତୀପଂ ଗମଃ
ଭୂୟିଷ୍ଠଂ ଭବ ଦକ୍ଷିଣା ପରିଜନେ ଭୋଗେଷ୍ୱନୁତ୍ସେକିନୀ
ଯାନ୍ତ୍ୟେବଂ ଗୃହିଣୀପଦଂ ଯୁବତୟୋ ବାମାଃ କୁଳସ୍ୟାଧୟଃ

ଅଭିଜ୍ଞାନଶାକୁନ୍ତଳ ୪ର୍ଥ ଅଙ୍କ ୧୭ ଶ୍ଲୋକ

କାଳିଦାସ ବିକ୍ରମ ଚନ୍ଦ୍ରଗୁପ୍ତଙ୍କର ଆଶ୍ରୟରେ କାବ୍ୟ କବିତା ରଚନାର ସୁଯୋଗ ଲାଭ କରିଥିଲେ ବୋଲି ପଣ୍ଡିତମାନେ ମତ ବ୍ୟକ୍ତ କରନ୍ତି । ରଘୁବଂଶବର୍ଣ୍ଣିତ ରଘୁଙ୍କର ଦିଗ୍‌ବିଜୟ-ବର୍ଣ୍ଣନା ଚନ୍ଦ୍ରଗୁପ୍ତଙ୍କ ଦିଗ୍‌ବିଜୟ ବୋଲି ପ୍ରତୀତ ହୁଏ ।

---

## ଜନ୍ମସ୍ଥାନ :—

ବହୁ ଗବେଷଣା ଫଳରେ ପଣ୍ଡିତମାନେ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, କାଳିଦାସ ଦ୍ୱିତୀୟ ଚନ୍ଦ୍ରଗୁପ୍ତଙ୍କ ରାଜତ୍ୱକାଳରେ ଉଜ୍ଜୟିନୀ ନଗରୀରେ ବାସ କରୁଥିଲେ । ସେ କାଳୀଙ୍କର ଉପାସକ ଥିଲେ । ଏବେ ସୁଦ୍ଧା ଉଜ୍ଜୟିନୀ ନଗରୀର କାଳୀମନ୍ଦିରରେ ସେ ଉପାସନା କରି ବରପ୍ରାପ୍ତ ହୋଇଥିଲେ ବୋଲି ଜନଶ୍ରୁତି ଅଛି । କେତେକ ପଣ୍ଡିତଙ୍କ ମତରେ ସେ ହେଉଛନ୍ତି କାଶ୍ମୀରୀ ବ୍ରାହ୍ମଣ । ମାତ୍ର ଅଧ୍ୟାପକ ଲକ୍ଷ୍ମୀଧର କଲ୍ଲା ପ୍ରମାଣ କରିଛନ୍ତି ଯେ କାଳିଦାସ କାଶ୍ମୀରର ଲୋକ ନୁହନ୍ତି, ଯେହେତୁ ତାଙ୍କର ନାମ କାଶ୍ମୀରୀ ନାମ ନୁହେଁ । ପୁନଶ୍ଚ ସେ କାଶ୍ମୀରବାସୀ ହୋଇଥିଲେ କାଶ୍ମୀରର କବି କହ୍ଲଣ ତାଙ୍କ କାବ୍ୟ ରାଜତରଙ୍ଗିଣୀରେ ତାଙ୍କ ବିଷୟରେ କିଛି ଉଲ୍ଲେଖ କରିଥାଆନ୍ତେ । ଅନ୍ୟ ଗବେଷକଙ୍କ ମତରେ ସେ ବିଦର୍ଭ ଦେଶର ଲୋକ । ମାତ୍ର ତାଙ୍କର କାବ୍ୟ ମେଘଦୂତର ଉଜ୍ଜୟିନୀନଗରୀ ବର୍ଣ୍ଣନା ଏତେ ସରସ, ସୁନ୍ଦର ହୋଇଛି ଯେ ତାକୁ ପାଠ କଲା ମାତ୍ରେ ପାଠକର ଦୃଢ଼ ଧାରଣା ହେବ ଯେ ସେ ନିଶ୍ଚୟ ଉଜ୍ଜୟିନୀ ବା ତନ୍ନିକଟବର୍ତ୍ତୀ ସ୍ଥାନରେ ଜନ୍ମଗ୍ରହଣ କରିଥିବେ ।

## ଶିକ୍ଷା :—

କାଳିଦାସ ଶୁଦ୍ଧ ବ୍ରାହ୍ମଣ ଥିଲେ ଓ ଆଶ୍ରମ ଜୀବନର ସାର୍ଥକତା ମନେକରି ରଘୁବଂଶର ପ୍ରଥମ ସର୍ଗରେ ମହର୍ଷି ବଶିଷ୍ଠଙ୍କର ଆଶ୍ରମ ଜୀବନକୁ ଚମତ୍କାର ଭାବେ ବର୍ଣ୍ଣନା କରିଛନ୍ତି । କୁମାରସମ୍ଭବରେ ଋଗ୍‌ବେଦର ଉଦାତ୍ତାଦି ସ୍ୱରର ଉଲ୍ଲେଖ ମଧ୍ୟ ସେ

କରିଛନ୍ତି । ରଘୁବଂଶର ଶ୍ଳୋକରେ ରାଜ୍ୟରକ୍ଷା ବିଷୟରେ ସେ ଅଥର୍ବବେଦର ମନ୍ତ୍ରମାନ ମଧ୍ୟ ଉଲ୍ଲେଖ କରିଛନ୍ତି । ପୁନଶ୍ଚ ସେ ଋଗ୍‌ବେଦରୁ ବିକ୍ରମୋର୍ବଶୀୟ ନାଟକର କଥାବସ୍ତୁ ଗ୍ରହଣ କରିଛନ୍ତି । ଉପନିଷଦ୍ ଓ ମନୁସ୍ମୃତିରୁ "ପରମେଶ୍ୱର ଜଳରେ ତାଙ୍କର ବୀର୍ଯ୍ୟ ନିଃକ୍ଷେପ କଲେ, ତହିଁରୁ ଜୀବଜଗତର ସୃଷ୍ଟି ହେଲା ଓ ସୃଷ୍ଟି ଲାଗି ଭଗବାନ୍ ସ୍ୱୟଂ ସ୍ତ୍ରୀ ପୁରୁଷ ରୂପ ଧାରଣ କଲେ" ଆଦି କଳ୍ପନାମାନ ସେ ଗ୍ରହଣ କରି କୁମାରସମ୍ଭବରେ ଉଲ୍ଲେଖ କରିଛନ୍ତି । କୁମାରସମ୍ଭବରେ ବ୍ରହ୍ମା ଓ ଶିବଙ୍କର ଏବଂ ରଘୁବଂଶରେ ବିଷ୍ଣୁଙ୍କର ସ୍ତୁତି ତାଙ୍କର ଉପନିଷଦ ଅଧ୍ୟୟନର ଏକେଶ୍ୱରବାଦର ପ୍ରମାଣ ।

ସାଂଖ୍ୟ ଓ ଦର୍ଶନାଦିରେ ମଧ୍ୟ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । କୁମାରସମ୍ଭବରେ "ପୁରୁଷ (ଆତ୍ମା) ଉଦାସୀନ ଓ ସୃଷ୍ଟିର ସର୍ବବିଧ ପ୍ରବୃତ୍ତି ପ୍ରକୃତିର କାର୍ଯ୍ୟ"—ଏହି ମତ ତାଙ୍କର ଜଣାପଡ଼େ । କୁମାରସମ୍ଭବରେ ଶିବଙ୍କର ଯୋଗବର୍ଣ୍ଣନାରୁ ପ୍ରମାଣିତ ହୁଏ ଯେ ସେ ଯୋଗଶାସ୍ତ୍ର ଅଧ୍ୟୟନ କରିଥିଲେ । କୁମାରସମ୍ଭବର ତୃତୀୟ ସର୍ଗର ପଞ୍ଚଚତ୍ୱାରିଂଶ ଶ୍ଳୋକରେ "ପର୍ଯ୍ୟଙ୍କ ବନ୍ଧ" ଏବଂ ରଘୁବଂଶର ତ୍ରୟୋଦଶ ସର୍ଗର ବାବନ ଶ୍ଳୋକରେ ବୀରାସନର ପ୍ରମାଣ ମିଳେ । ଗୃହ୍ୟସୂତ୍ର ନିୟମ ତାଙ୍କର କୁମାରସମ୍ଭବ ଓ ରଘୁବଂଶରେ ମିଳେ । ବିବାହ ପରେ ପତି ପତ୍ନୀ ତିନି ଦିନ ଯାଏ ବ୍ରହ୍ମଚର୍ଯ୍ୟ ପାଳନ କରି ଭୂମିରେ ଶୟନ କରିବା ବିଷୟ ସେ, ଶିବ ପାର୍ବତୀଙ୍କ ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି । ମନୁସ୍ମୃତି ପ୍ରମାଣ ଅନୁସାରେ ଦିଲୀପଙ୍କର ପ୍ରଜାନୁରକ୍ତି ସେ ବର୍ଣ୍ଣନା କରିଛନ୍ତି । ଆଉ ମଧ୍ୟ କୁମାରସମ୍ଭବର ଦ୍ୱିତୀୟସର୍ଗସ୍ଥିତ ସପ୍ତଦଶ ଶ୍ଳୋକର

"ସ୍ମରଣ୍ଟସ୍ୟ କବେସ୍ତତ୍ୟ" ତଥା 'ଚତୁଷ୍ଟୟୀ ଶବ୍ଦ ନାଂ ପ୍ରବୃତ୍ତିଃ"ରୁ ପ୍ରମାଣ ମିଳେ ଯେ ସେ ପତଞ୍ଜଳି ମହାଭାଷ୍ୟ ପଠନ କରି ଉକ୍ତ ବିଷୟ ତାଙ୍କ କାବ୍ୟରେ ଉଦ୍ଧାର କରିଛନ୍ତି । ବିକ୍ରମାଦିତ୍ୟ ତାଙ୍କୁ ରାଜଦୂତରୂପେ କୁନ୍ତଳେଶ୍ୱର ପଠାଇଥିବାର ଉଲ୍ଲେଖ ଅଛି । ଏଥିରୁ ପ୍ରମାଣ ମିଳେ ଯେ ସେ ରାଜନୀତି ଶାସ୍ତ୍ରବିତ୍ ମଧ୍ୟ ଥିଲେ । କୁମାର ସମ୍ଭବର ତୃତୀୟ ସର୍ଗସ୍ଥିତ ୬୨ତମ ଶ୍ଳୋକରେ ସପ୍ତାଙ୍ଗ, ଯାତବ୍ୟ, ପ୍ରକୃତି, ମୂଳ, ପାର୍ଷ୍ଣି ପ୍ରଭୃତି ଶବ୍ଦ ସେ ଶୁକ୍ରନୀତି ଦାରରୁ ଗ୍ରହଣ କରିଥିବାର ପ୍ରମାଣ ମିଳେ । ଅର୍ଥଶାସ୍ତ୍ରର ନୟମାନୁଯାୟୀ ଅଗ୍ନିମିତ୍ର, ପୁରୂରବା ଓ ଦୁଷ୍ୟନ୍ତଙ୍କର ମନ୍ତ୍ରିପରିଷଦ ଗଠନ ସେ ବର୍ଣ୍ଣନା କରିଛନ୍ତି । ସେ ବାତ୍ସ୍ୟାୟନ କାମଶାସ୍ତ୍ର ଉତ୍ତମରୂପେ ଚିନ୍ତା କରି ତନ୍ମଧ୍ୟରୁ କେତେକ ବିଷୟ ତାଙ୍କର ଅଭିଜ୍ଞାନ ଶାକୁନ୍ତଳରେ ବର୍ଣ୍ଣନା କରିଛନ୍ତି । କୁମାରସମ୍ଭବର ସପ୍ତମ ସର୍ଗସ୍ଥିତ ପ୍ରଥମ ଶ୍ଳୋକ ତଥା ରଘୁବଂଶର ୩ୟ ସର୍ଗସ୍ଥିତ ତ୍ରୟୋଦଶ ଶ୍ଳୋକରେ 'ଜାମିତ୍ର' 'ଉଚ୍ଚସ୍ଥ' ଶବ୍ଦ ପ୍ରୟୋଗରୁ ସେ ଜ୍ୟୋତିଷ ଶାସ୍ତ୍ର, ଆୟୁର୍ବେଦ ତଥା ଧନୁର୍ବେଦ ପାଠ କରିଥିବାର ପ୍ରମାଣ ମିଳେ । କୁମାରସମ୍ଭବର ଦ୍ୱିତୀୟ ସର୍ଗସ୍ଥିତ ଦ୍ୱାତ୍ରିଂଶ ଶ୍ଳୋକରେ ସେ ଉଲ୍ଲେଖ କରିଛନ୍ତି ଯେ ତାରକାସୁର ଧୂମକେତୁ ପରି ଆବିର୍ଭୂତ ହୋଇଥିଲା । ଆଉ ମଧ୍ୟ ଉକ୍ତ କୁମାରସମ୍ଭବର ତୃତୀୟ ସର୍ଗସ୍ଥ ତ୍ରିଚତ୍ୱାରିଂଶ ଶ୍ଳୋକରେ ସେ ଚନ୍ଦ୍ରଙ୍କର ଉତ୍ତର ଫାଲ୍‌ଗୁନୀ ନକ୍ଷତ୍ର ସହିତ ଯୋଗ ହେଲାପରେ ମୈତ୍ର ମୁହୂର୍ତ୍ତ ହେଲା ବୋଲି ଲେଖିଛନ୍ତି । ପୁନଶ୍ଚ ସେ ବିକ୍ରମୋର୍ବଶୀୟ ନାଟକର ପ୍ରଥମ ଅଙ୍କରେ ଲେଖିଛନ୍ତି—

"ଏଷ ଚନ୍ଦ୍ରଲେଖାଦ୍ୱିତୀୟାମୁଦ୍ରଣୀଃ ଗୃହୀତ୍ୱା ଦ୍ୱିଶାଖା-ସମୀପଗତ ଇବ ଚନ୍ଦ୍ର ଉପସ୍ଥିତୋ ରାଜର୍ଷିଃ" ଓ ଅଭିଜ୍ଞାନ ଶାକୁନ୍ତଳର ୭ମ ଅଙ୍କରେ—'କମଳ ଚନ୍ଦ୍ରଂ ଯଦି ଦ୍ୱିଶାଖା ଶଶାଙ୍କଲେଖାମନୁବର୍ତ୍ତିତେ"ରୁ ପ୍ରମାଣ ମିଳେ ଯେ ସେ ଜ୍ୟୋତିଷ-ଶାସ୍ତ୍ର ଅଧ୍ୟୟନ କରିଥିଲେ ।

ଏତଦ୍‌ବ୍ୟତୀତ "ଆଲୀଢ଼" ବାଦ୍ୟମାସ୍ତ୍ରଜନା ପାରିଭାଷିକ ଶବ୍ଦରୁ ଓ "ଆରଣ୍ୟକହସ୍ତୀ ରାଜାଙ୍କର ଅବଧ୍ୟ" ଇତ୍ୟାଦିରୁ ପ୍ରମାଣ ମିଳେ ଯେ ସେ ଧନୁର୍ବେଦ ଶିକ୍ଷା କରିଥିଲେ ।

ତାଙ୍କର ସ୍ୱଭାବ ଅତୀବ ସରଳ । କୁମାରସମ୍ଭବର ପଞ୍ଚମ ସର୍ଗସ୍ଥ ଅଣତିରିଶ ତଥା ରଘୁବଂଶର ଦ୍ୱିତୀୟ ସର୍ଗସ୍ଥିତ ଅଠାବନ ଶ୍ଳୋକରେ ସେ କହିଛନ୍ତି ଯେ କାହା ସହିତ ସାତ ପାଦ ଚାଲିଗଲେ ବା ସାତ ପଦ କଥାବାର୍ତ୍ତା ହେଲେ ମିତ୍ରତା ସହଜରେ ଜନ୍ମିଥାଏ । କାଳିଦାସ ଗୃହସ୍ଥାଶ୍ରମର ସମର୍ଥକ ଥିଲେ; କାରଣ—

"ସ୍ତ୍ରୀମାନଙ୍କ ବିନା ଧର୍ମକାର୍ଯ୍ୟ ଅସମ୍ଭବ"

କୁମାରସମ୍ଭବ—୬/୧୩

"ବରକନ୍ୟାବିବାହରେ ସ୍ତ୍ରୀମାନେ ଚତୁର"

କୁମାରସମ୍ଭବ—୬/୧୩

"ପୁରୁଷ ନିଜ କନ୍ୟା ବିବାହରେ ସ୍ତ୍ରୀ ବୁଦ୍ଧିରେ ପରିଚାଳିତ ହୁଏ ।"

କୁମାରସମ୍ଭବ– ୬/୮

ଏମାନଙ୍କରୁ ପ୍ରମାଣିତ ହୁଏ ଯେ, ସେ ଗୃହସ୍ଥାଶ୍ରମର ପକ୍ଷପାତୀ ।

**କିମ୍ବଦନ୍ତୀ:**—ଏହା ନିଶ୍ଚିତ ସତ୍ୟ ଯେ କୌଣସି ମହାପୁରୁଷ, ମହାକବି ତଥା ମହୀୟାନ୍ ବ୍ୟକ୍ତିଙ୍କୁ କେନ୍ଦ୍ରକରି ବିବିଧ କିମ୍ବଦନ୍ତୀର ସୃଷ୍ଟି ହୋଇଥାଏ । କାଳିଦାସ ମହାକବି ଓ ଏକ ଅସାମାନ୍ୟ ପଣ୍ଡିତ ରୂପେ ସମ୍ମାନିତ ହୋଇଥିବାରୁ ତାଙ୍କୁ କେନ୍ଦ୍ର କରି ବହୁତ କିମ୍ବଦନ୍ତୀ ଶୁଣାଯାଏ ।

ପ୍ରବାଦ ଅଛି ଯେ ସେ ପ୍ରଥମେ ମୂର୍ଖ ଥିଲେ ଓ ତାଙ୍କର ବ୍ୟବହାର ଜ୍ଞାନ ମଧ୍ୟ ନ ଥିଲା । ତତ୍କାଳୀନ ଗୌଡ଼ ନରପତି ମାଣିକେଶ୍ୱରଙ୍କର ଅସାମାନ୍ୟା ରୂପସୀ କନ୍ୟା ବିଦୁଷୀ ରତ୍ନାବତୀ ରାଜସଭାର ସମସ୍ତ ପଣ୍ଡିତଙ୍କୁ ଶାସ୍ତ୍ରରେ ପରାସ୍ତ କରିଥିବାରୁ ସେମାନେ ଚକ୍ରାନ୍ତ କରି କାଳିଦାସଙ୍କ ସହିତ ତାଙ୍କର ବିବାହ ସମ୍ପନ୍ନ କରାଇଥିଲେ । ବାସର ରଜନୀରେ ତାହା ଜଣା ପଡ଼ିଲା । ବାସର ଗୃହର ଅନତିଦୂରରେ ଏକ ଉଷ୍ଟ୍ରର ଶବ୍ଦ ଶୁଣି ରତ୍ନାବତୀ ସ୍ୱାମୀ କାଳିଦାସଙ୍କୁ କାହାର ଶବ୍ଦ ବୋଲି ପ୍ରଶ୍ନ କରନ୍ତେ କାଳିଦାସ 'ଉଷ୍ଟ୍ର' ବୋଲି କହିଲେ । ରତ୍ନାବତୀ ଚମକି ପଡ଼ି "ଉଷ୍ଟ୍ର" ବୋଲି ପ୍ରଶ୍ନ କରନ୍ତେ କାଳିଦାସ ପୁଣି କହିଲେ "ଉଟ୍ର" । ଏଥିରେ ରତ୍ନାବତୀଙ୍କର ମନରେ ନୈରାଶ୍ୟର ଅମା ଘୋଟିଗଲା । ସେ ହତାଶ ପ୍ରାଣରେ ସହସା ଉଚ୍ଚାରଣ କଲେ—

"କିଂ ନ କରୋତି ବିଧିର୍ଯଦି ରୁଷ୍ଟଃ
କିଂ ନ କରୋତି ସ ଏବ ହି ତୁଷ୍ଟଃ

ଉଷ୍ଟ୍ରେ ଲୁମ୍ପତି ରମ୍ବା ଷମ୍ବା
ତସ୍ମୈ ଦତ୍ତା ବଦ୍ୟକନ୍ୟକା”

—"ବିଧି ରୁଷ୍ଟ ହେଲେ କି ଅନିଷ୍ଟ ନ କରେ ; ପୁଣି ସନ୍ତୁଷ୍ଟ ହେଲେ କି ହିତ ବା ନ କରେ । ଉଷ୍ଟ୍ର ଶବ୍ଦ ଉଚ୍ଚାରଣରେ ଯେ 'ର' ବା 'ଷ' ଲୋପ କରି କହୁଛି ତାକୁ ମୋତେ ଦଇବ ସମର୍ପଣ କଲା !

କାଳିଦାସ ପତ୍ନୀଙ୍କର ଏତାଦୃଶ ବାକ୍ୟ ଶୁଣି ମ୍ରିୟମାଣ ହୋଇଉଠିଲେ । ତାଙ୍କର ଏପରି ମନୋଭାବ ଜାଣି ରତ୍ନାବତୀ ପୁଣି ପ୍ରଶ୍ନ କଲେ—

"ଅସ୍ତି କଶ୍ଚିତ୍ ବାକ୍ ବିଶେଷଃ ?"

କାଳିଦାସ ନିରୁତ୍ତର ହୋଇ ଅପମାନରେ ଗୃହତ୍ୟାଗ କରି ଆତ୍ମହତ୍ୟା ଲାଗି ଏକ ପୁଷ୍କରିଣୀ ନିକଟରେ ପହଞ୍ଚିଲେ । ଏହିଠାରେ ତାଙ୍କର ଭାଗ୍ୟରବି ଉଦୟ ହେଲା । ଦେବୀ ସରସ୍ୱତୀ ତାଙ୍କ ପ୍ରତି ଅନୁରକ୍ତି ପ୍ରକାଶ କରି ବରଦାନ ଦେଲେ । ତାଙ୍କର ବରଦାନ ଫଳରେ ସେ କବିତ୍ୱ ଲାଭ କଲେ ଓ ତାଙ୍କୁ ବର୍ଣ୍ଣନା କଲେ—

କଜ୍ଜଳପୂରିତଲୋଚନଧାରେ
ସ୍ତନଯୁଗଶୋଭିତମୁକ୍ତାହାରେ
ବୀଣାପୁସ୍ତକରଞ୍ଜିତହସ୍ତେ
ଭଗବତି ଭାରତି ଦେବି ନମସ୍ତେ ।

ତୁମର ନୟନଧାରି କଜ୍ଜଳରେ ପୂର୍ଣ୍ଣ । ସ୍ତନଦ୍ୱୟ ମୁକ୍ତା-ହାରରେ ସୁଶୋଭିତ । ବୀଣା ପୁସ୍ତକ ତୁମର ହସ୍ତରେ ଶୋଭମାନ । ହେ ଭଗବତି ଭାରତି ଦେବି, ମୁଁ ତୁମକୁ ପ୍ରଣାମ କରୁଛି ।

ଏପରି ନଗ୍ନବର୍ଣ୍ଣନା ଶୁଣି ସରସ୍ୱତୀ ତାଙ୍କ ପ୍ରତି ରୁଷ୍ଟା ହେଲେ ଓ ତାଙ୍କୁ ଅଭିଶାପ ଦେଲେ ଯେ ସେ ବିଦ୍ୟାରେ କାଶୀନଗରୀକୁ ଜୟ କରିପାରିବେ ନାହିଁ ଓ ଆଜୀବନ ବେଶ୍ୟାସକ୍ତ ହେବେ । ତାଙ୍କର ଏ ବାକ୍ୟ ଶୁଣି କାଳିଦାସ ଦୁଃଖରେ ଭାଜି ପଡ଼ିଲେ । ତାଙ୍କର ଏପରି ଦୟନୀୟ ଅବସ୍ଥା ଦେଖି ସରସ୍ୱତୀ ତାଙ୍କ ପ୍ରତି ସଦୟା ହେଲେ ଓ ତାଙ୍କ କରସ୍ପର୍ଶରେ ତାଙ୍କର ଅଜ୍ଞାନାନ୍ଧକାର ଦୂରୀଭୂତ ହେଲା । ସମ୍ମୁଖରେ ଥିବା ସାରସ୍ୱତ କୁଣ୍ଡରେ ବୁଡ଼ିବା ଲାଗି ସେ କାଳିଦାସଙ୍କୁ ଆଦେଶ ଦେଲେ । କାଳିଦାସ ପ୍ରଥମେ ପଙ୍କ, ଶୈବାଳ ପ୍ରଭୃତି ଲାଭ କରି ପରେ ସପ୍ତମ ଥରକୁ ଦକ୍ଷିଣ ହସ୍ତରେ ପଦ୍ମନାଳ ଓ ବାମହସ୍ତରେ କଇଁନାଳ ଆଣି ସରସ୍ୱତୀଙ୍କୁ ପଚାରିଲେ—

ପଦ୍ମମିଦଂ ମେ ଦକ୍ଷିଣହସ୍ତେ
ବାମକରେ ଲସଦୁତ୍ପଳନାଳଂ
ବ୍ରୂହି କମିଚ୍ଛସି ପଙ୍କଜନେତ୍ରେ ।
କର୍କଶ ନାଳମକର୍କଶନାଳମ୍ ।

—ହେ ଦେବି । ମୋ ଦକ୍ଷିଣ ହସ୍ତରେ ପଦ୍ମନାଳ ଓ ବାମହସ୍ତରେ ପ୍ରସ୍ଫୁଟିତ କଇଁନାଳ ଅଛି । ଗୋଟିଏ କଣ୍ଟକିତ ଓ ଅନ୍ୟଟି ଚିକ୍କଣ, ଆପଣ କାହାକୁ ଇଚ୍ଛା କରନ୍ତି ? ଦେବୀ କହିଲେ— "ତୁମର ଯାହା ଇଚ୍ଛା ତାହା ଦିଅ ।" ସେତେବେଳକୁ କାଳିଦାସଙ୍କର ଦିବ୍ୟଜ୍ଞାନ ଉଦୟ ହୋଇଥିଲା । ତେଣୁ ସେ ବିଚାର କଲେ ଦେବୀଙ୍କର ଦକ୍ଷିଣାଙ୍ଗ ସୂର୍ଯ୍ୟାତ୍ମକ ଓ ବାମାଙ୍ଗ ଚନ୍ଦ୍ରାତ୍ମକ । ସୂର୍ଯ୍ୟ ପଦ୍ମର ବନ୍ଧୁ ଓ ଚନ୍ଦ୍ର କଇଁର ବନ୍ଧୁ । ତେଣୁ ସେ ଦେବୀଙ୍କର ଦକ୍ଷିଣପାଦରେ ପଦ୍ମଟିକୁ

ରଖି ଓ ବାମପାଦ ଉପରେ କଉଁଟିକୁ ରଖି ସ୍ତବପାଠ କରି ଦେବୀଙ୍କର ଆଶୀର୍ବାଦ ଲାଭକଲେ । କିନ୍ତୁ ତାଙ୍କର ପ୍ରଥମ ଅଭିଶାପ ମନେ ପକାଇ ସେ ତାର ଖଣ୍ଡନ ଲାଗି ଦେବୀଙ୍କୁ ବାର ବାର ଅନୁରୋଧ କରନ୍ତେ ଦେବୀ ଉଚ୍ଚାରଣ କଲେ—

'ଲବ୍ଧବ୍ୟମର୍ଥଂ ଲଭତେ ମନୁଷ୍ୟୋ
ଦୈବୋଽପି ତଂ ବାରୟିତୁଂ ନ ଶକ୍ତଃ
ଅତୋ ନ ଶୋଚେ୍ୟା ନଚ ବିସ୍ମିତସ୍ତ୍ୱମ୍
ଲଲାଟଲେଖା ନ ପୁନଃ ପ୍ରୟାତି ॥

ମନୁଷ୍ୟକୁ ଯାହା ମିଳିବାର ଥାଏ ତାହା ମିଳିଥାଏ । ଦୈବ ମଧ୍ୟ ତାହା ଅନ୍ୟଥା କରିପାରେ ନାହିଁ । ଏଣୁ ତୁମେ ଏଥିରେ ଦୁଃଖ କର ନା ବା ଆଶ୍ଚର୍ଯ୍ୟ ହୁଅ ନା । ଲଲାଟଲେଖା ଘୁଞ୍ଚିବାର ନୁହେଁ । ଏହା କହି ଦେବୀ ବୀଣାପାଣି କାଳିଦାସଙ୍କ ସମ୍ମୁଖରୁ ହଠାତ୍ ଅନ୍ତର୍ଦ୍ଧାନ ହେଲେ । ତାପରେ କାଳିଦାସ ନିଜକୁ ସେଠାରେ ଏକାକୀ ମନେ କରି ଅନ୍ୟତ୍ର ଯିବାକୁ ଇଚ୍ଛାକଲେ । ତତ୍ପୂର୍ବରୁ ଗୃହରେ ତାଙ୍କର ସେହି ପ୍ରଶ୍ନବାଚୀ—'ପଥ କାହିଁ ?' ଶେଷରେ ସେ ପତ୍ନୀଙ୍କର ସେହି ହୃଦୟବିଦାରକ ବାକ୍ୟ "ଅସ୍ତି କଶ୍ଚିତ୍ ବାକ୍" ମନେ ପକାଇ ସେହି ତିନୋଟି ଶବ୍ଦ ପ୍ରଥମେ ପ୍ରୟୋଗ କରି ରଚନା କଲେ ତାଙ୍କର ଅନବଦ୍ୟ କାବ୍ୟ କୁମାର-ସମ୍ଭବ, ମେଘଦୂତ ଓ ରଘୁବଂଶ ।

ଯଥା :—

ଅସ୍ତ୍ୟୁତ୍ତରସ୍ୟାଂ ଦିଶି ଦେବତାତ୍ମା
ହିମାଳୟୋ ନାମ ନଗାଧିରାଜଃ

ପୂର୍ବାପରୌ ତୋୟନିଧୀ ବଗାହ୍ୟ
ସ୍ଥିତଃ ପୃଥିବ୍ୟା ଇବ ମାନଦଣ୍ଡଃ ।

କୁମାରସମ୍ଭବ—୧/୧

—ପୂର୍ବ ଓ ପଶ୍ଚିମ ସମୁଦ୍ର ପର୍ଯ୍ୟନ୍ତ ବିସ୍ତୃତ, ପୃଥିବୀର ମାନଦଣ୍ଡସମ ବିଦ୍ୟମାନ, ଦେବନ୍ତ ମାନଙ୍କର ଅଧିଷ୍ଠାନ ଭୂମି ହିମାଳୟ ନାମକ ପର୍ବତରାଜ ଭୂଖଣ୍ଡର ଉତ୍ତରରେ ବିରାଜମାନ ।

କଶ୍ଚିତ୍ କାନ୍ତାବିରହଗୁରୁଣା ସ୍ୱାଧିକାରାତ୍ ପ୍ରମତ୍ତଃ
ଶାପେନାସ୍ତଂଗମିତମହିମା ବର୍ଷଭୋଗ୍ୟେଣ ଭର୍ତ୍ତୁଃ
ଯକ୍ଷଶ୍ଚକ୍ରେ ଜନକତନୟାସ୍ନାନପୁଣ୍ୟୋଦକେଷୁ
ସ୍ନିଗ୍ଧଚ୍ଛାୟାତରୁଷୁ ବସତିଂ ରାମଗିର୍ଯ୍ୟାଶ୍ରମେଷୁ ।

ରଘୁବଂଶ— ୧/୧

ଅଳକ ପତି କୁବେରର ଭୃତ୍ୟ ଯକ୍ଷ କର୍ତ୍ତବ୍ୟରେ ଅବହେଳା ପ୍ରଦର୍ଶନ କରନ୍ତେ ତାଙ୍କୁ ଏକବର୍ଷ ରାମଗିରିରେ ବାସ କରିବା ଲାଗି କୁବେର ଅଭିଶାପ ଦେଲେ । ରାମଗିରି ତୀର୍ଥସ୍ଥାନ । ରାମ ସୀତା ଏ ପର୍ବତରେ କିଛି ଦିନ ବାସ କରି ଥିବାରୁ ଏ ସ୍ଥାନଟି ପବିତ୍ର । ଏଠି ବନର ସୁକୋମଳ ଗୁଳ୍ମତଳରେ ଆଶ୍ରୟ ନେଇ ଯକ୍ଷ ଏକବର୍ଷ ପାଇଁ ବନବାସ ଆରମ୍ଭ କଲା ।

ବାଗର୍ଥାବିବ ସଂପୃକ୍ତୌ
ବାଗର୍ଥପ୍ରତିପତ୍ତୟେ
ଜଗତଃପିତରୌ ବନ୍ଦେ
ପାର୍ବତୀପରମେଶ୍ୱରୌ ॥

ରଘୁବଂଶ—୧/୨

—ଶବ୍ଦ ଓ ଅର୍ଥ ପରି ନିତ୍ୟସମ୍ବଦ୍ଧ, ଜଗତର ଜନକ-ଜନନୀ ପାର୍ବତୀ ଓ ପରମେଶ୍ୱରଙ୍କୁ ଶବ୍ଦ ଓ ଅର୍ଥର ସମ୍ୟକ୍ ଜ୍ଞାନ ଲାଗି ମୁଁ ବନ୍ଦନା କରୁଛି ।

ଏହାପରେ କାଳିଦାସ ବିକ୍ରମାଦିତ୍ୟଙ୍କ ରାଜସଭାରେ ସ୍ଥାନ ପାଇଲେ । ତାଙ୍କ ରାଜ ସଭାରେ ଧନ୍ୱନ୍ତରି କ୍ଷପଣକ ଆଦି ଅଷ୍ଟରତ୍ନ ସ୍ଥାନ ପାଇଥିଲେ । କାଳିଦାସ ନବରତ୍ନ ରୂପେ ତହିଁରେ ଆସନ ଲାଭ କଲେ । ତାଙ୍କର ଜ୍ଞାନର ଅଭ୍ୟୁଦୟ ଏଠାରୁ ହିଁ ଆରମ୍ଭ ହେଲା । ରାଜସଭାର ଅଦୂରରେ ପତିତ ଏକ ଶୁଷ୍କ କାଷ୍ଠକୁ ଲକ୍ଷ୍ୟ କରି ଯେତେବେଳେ ବରରୁଚି କହିଲେ—

"ଶୁଷ୍କଂ କାଷ୍ଠଂ ତିଷ୍ଠତ୍ୟଗ୍ରେ"

ସେହିକ୍ଷଣି ବେଳେ ସୁମଧୁର ପଦରେ କାଳିଦାସ କହିଲେ—

"ନୀରସତରୁବରଃ ପୁରତୋ ଭାତି ।"

ରାଜସଭାର ଅନ୍ୟ ଏକ ପଣ୍ଡିତ ଯେତେବେଳେ ରାଜସଭାର ପଣ୍ଡିତମଣ୍ଡଳୀକୁ—

"ତତଃ କିଂ ତତଃ କିଂ ତତଃ କିଂ ତତଃ କିମ୍"

ପାଦ ପୂରଣ କରି ଶ୍ଳୋକ ରଚନା କରିବାକୁ ଆହ୍ୱାନ ଦେଲେ ସେତେବେଳେ ଏକମାତ୍ର କାଳିଦାସ ପାଦପୂରଣ କରି ଶ୍ଳୋକ ରଚନା କଲେ—

"ଧନଂ ପର୍ବତାଭଂ ବଚଶ୍ଚିତ୍ରରୂପଂ
ବପୁଃ କର୍ମଦକ୍ଷଂ ପରା ପୂର୍ଣ୍ଣ-ବୁଦ୍ଧିଃ ।
ନ ଦାନଂ ନ ପାଠୋ ନ ଧର୍ମୋ ନ କୀର୍ତ୍ତିଃ
ତତଃ କିଂ ତତଃ କିଂ ତତଃ କିଂ ତତଃ କିମ୍ ॥

—ପର୍ବତସମ ଧନ ଥାଇ, ଦାନ ନ ଦେଲେ, ବିଚିତ୍ର ବାକ୍‌ଶକ୍ତି ଥାଇ ପଠନ ନ କଲେ, କର୍ମଦକ୍ଷ ଶରୀର ଥାଇ ଧର୍ମକାର୍ଯ୍ୟ ନ କଲେ, ଉତ୍ତମ ବୁଦ୍ଧି ଥାଇ କୀର୍ତ୍ତି ନ ଅର୍ଜିଲେ ସେ ଧନ, ସେ ବାକ୍‌ଶକ୍ତି, ସେ ଶରୀର ଓ ସେ ବୁଦ୍ଧି କି ଦରକାର !

ଧାରାନଗରୀରେ ଭୋଜରାଜଙ୍କ ସଭାରେ ଭବଭୂତି ନାମକ ଏକ ପଣ୍ଡିତ ଥିଲେ । କାଳିଦାସ ନିଜର ପାଣ୍ଡିତ୍ୟବିକାଶ-ଲାଗି ସେଠାକୁ ଛଦ୍ମବେଶରେ ଯାଇ ତାଙ୍କ ସହିତ ଶାସ୍ତ୍ରାଲୋଚନା କଲେ । ଭବଭୂତି ମଧ୍ୟ ନିଜର ପରିଚୟ ଗୋପନପୂର୍ବକ କାଳିଦାସଙ୍କୁ ସମ୍ମୁଖସ୍ଥ ପୁଷ୍କରିଣୀରେ କେଳିରତ ଚକ୍ରବାକ-ଚକ୍ରବାକୀକୁ ଲକ୍ଷ୍ୟ କରି ପ୍ରଶ୍ନ ପଚାରନ୍ତେ କାଳିଦାସ ଉଚ୍ଚାରଣ କଲେ—

''ଆୟାତି ଯାତି ପୁନରେବ ଜଳଂ ପ୍ରୟାତି
ପଦ୍ମାଙ୍କୁରାଣି ବିଚିନୋତି ଧୁନୋତି ପକ୍ଷୌ
ଉନ୍ମତ୍ତବଦ୍ ଭ୍ରମତି କୂଜତି ରୁଦ୍ଧକଣ୍ଠ ।
କାନ୍ତା ବିୟୋଗବିଧୁରୋ ନିଶି ଚକ୍ରବାକଃ ॥

ରାତିରେ କାନ୍ତାବିଚ୍ଛେଦ ଦୁଃଖ ଅନୁଭବ କରି ଚକ୍ରବାକ ପୁଷ୍କରିଣୀକୁ ଯାଉଛି, ଫେରି ଆସୁଛି ପୁଣି ଜଳନିକଟକୁ ଯାଉଛି । ପଦ୍ମକଢ଼ମାନଙ୍କୁ ଛିଣ୍ଡାଉଛି, ପକ୍ଷକୁ କଂପନ କରୁଛି, ପାଗଳପରି ଏଣେ ତେଣେ ବୁଲୁଛି ଓ କଣ୍ଠରୁଦ୍ଧ ହୋଇ ଶବ୍ଦ କରୁଛି ।

କାଳିଦାସଙ୍କ ରଚନାରେ 'ଆୟାତି' 'ଯାତି' 'ପ୍ରୟାତି' 'ବିଚିନୋତି' 'ଧୁନୋତି' 'ଭ୍ରମତି' 'କୂଜତି' ପ୍ରଭୃତି ବହୁତ କ୍ରିୟାଶବ୍ଦର ପ୍ରୟୋଗକୁ ନାପସନ୍ଦ କରି ଭବଭୂତି କହିଲେ—

'ଭଂକ୍ତ୍ୱା ଭୋକ୍ତୁଂ ନ ଭୁଂକ୍ତେ କୁଟିଳବିସଲତା-
ଖଣ୍ଡମିନ୍ଦୋ ର୍ବିତର୍କା—,
ଖ୍ୱାନ୍ତାସକ୍ତ ତୃଷାର୍ତ୍ତୋ ନ ପିବତି ପୟସୋ
ବିପ୍ରୁଷଃ ପଦ୍ମସଂସ୍ଥାଃ ।
ଗୁମ୍ଫାମମ୍ଭୋଜନୀନାମଳିକୁଳଜଣିତାଂ
ବୀକ୍ଷ୍ୟ ସନ୍ଧ୍ୟାମସନ୍ଧ୍ୟାଂ
କାନ୍ତାବିଚ୍ଛେଦଭୀରୁର୍ଦ୍ଦିନମପି ରଜନୀଂ
ମନ୍ୟତେ ଚକ୍ରବାକଃ ।"

—ଚକ୍ରବାକ ପକ୍ଷୀ କାନ୍ତାବିରହରେ ଭୀତତ୍ରସ୍ତ ହୋଇ କୁଟିଳ ପଦ୍ମନାଡ଼ଙ୍କୁ ଖାଇବାକୁ ଭାଙ୍ଗୁଛି, କିନ୍ତୁ ଚନ୍ଦ୍ର ମନେ କରି ଖାଉ ନାହିଁ । ତୃଷାତୁର ହୋଇ ପଦ୍ମପତ୍ରସ୍ଥିତ ଜଳକୁ ପିଇବାକୁ ଯାଉଛି, କିନ୍ତୁ ତାକୁ ତାରା ମନେ କରି ପିଉ ନାହିଁ । ଭ୍ରମର ଶବ୍ଦିତ ପଦ୍ମର ଗୁମ୍ଫା ଦେଖି ଅସନ୍ଧ୍ୟାକୁ ସନ୍ଧ୍ୟା ଓ ଦିନକୁ ରାତି ମନେ କରୁଛି ।

ଉକ୍ତ ଶ୍ଳୋକ ଶ୍ରବଣ କରି କାଳିଦାସ ଭବଭୂତିଙ୍କୁ ଚିହ୍ନିଲେ ଓ ଉଭୟେ ପରସ୍ପର ସମ୍ଭାଷଣ ପୂର୍ବକ ଧାରା ନଗରୀରେ ବିଚରଣ କରୁ କରୁ ଜନୈକ ସ୍ତ୍ରୀ ଠାରୁ ପାନ କିଣିବାକୁ ଇଚ୍ଛା ପ୍ରକାଶ କଲେ । ସେ ସ୍ତ୍ରୀଲୋକଟି ଉଭୟଙ୍କର ଜ୍ଞାନ ପରୀକ୍ଷା ଲାଗି କାଳିଦାସଙ୍କ ପାନରେ ଖଇର ଓ ଭବଭୂତିଙ୍କ ପାନରେ ଚୂନ ଦେଇ ନ ଥିଲା । ତେଣୁ ଭବଭୂତି ଉକ୍ତ ସ୍ତ୍ରୀକୁ ସମ୍ବୋଧନ କରି କହିଲେ—

ଚୂର୍ଣ୍ଣମାମାସ୍ତୁତାଂ ଚୂର୍ଣ୍ଣଂ
ପୂର୍ଣ୍ଣଚନ୍ଦ୍ରନିଭାନନେ !
ପର୍ଣ୍ଣାନି ସ୍ୱର୍ଣ୍ଣବର୍ଣ୍ଣାନି
ନଶ୍ୟନ୍ତ୍ୟାକର୍ଣ୍ଣଲୋଚନେ ।"

—ହେ ପୂର୍ଣ୍ଣଚନ୍ଦ୍ରବଦନା, ଶୀଘ୍ର ଚୂନ ଆଣ । ହେ ଆକର୍ଣ୍ଣ ଲୋଚନେ ! ଚୂନ ନ ହେଲେ ଏ ସ୍ୱର୍ଣ୍ଣବର୍ଣ୍ଣବିଶିଷ୍ଟ ପାଚିଲାପାନ ନଷ୍ଟ ହୋଇଯିବ ।

କାଳିଦାସ ମଧ୍ୟ ଖଇର ପାଇବା ଆଶାରେ ସେ ପାନ ବିକୁଥିବା ସ୍ତ୍ରୀକୁ ସମ୍ବୋଧନ କରି କହିଲେ—

"ବିନା ଖଦିରସାରେଣ
ହାରେଣ ହରିଣୀଦୃଶାଂ
ନାଧରେ ଜାୟତେ ରାଗୋ
ନାନୁରାଗଃ ପୟୋଧରେ ।"

—ହାର ବିନା ଯେପରି ନାରୀମାନଙ୍କର କୁଚମଣ୍ଡଳରେ ସ୍ନେହ ନ ଜନ୍ମେ, ସେପରି ଖଇର ନ ହେଲେ ଅଧରରେ ରକ୍ତିମା ଜନ୍ମେ ନାହିଁ ।

ପ୍ରବାଦ ଅଛି ଯେ ଥରେ କାଳିଦାସଙ୍କୁ ଗଞ୍ଜୁଡ଼ି ମନେ କରି ଭୋଜରାଜା ନିଜର ପାଲିଙ୍କି କାନ୍ଧେଇବା ପାଇଁ ନିଯୁକ୍ତ କଲେ । ସେ ଏଥିରେ ଅଭ୍ୟସ୍ତ ନ ଥିବାରୁ ତାଙ୍କ କାନ୍ଧକୁ ବାଧୁଥାଏ । ତେଣୁ ସେ ବହୁଥର କାନ୍ଧ ବଦଳାଇ କଷ୍ଟ ଅନୁଭବ କରୁଥିବାର ଲକ୍ଷ୍ୟ କରି ଭୋଜରାଜା ତାଙ୍କୁ ପ୍ରଶ୍ନ କଲେ—

"କ୍ଷଣଂ ବିଶ୍ରମ୍ୟତାଂ ବିପ୍ର !
ସ୍କନ୍ଧଂ ତେ ଯଦି ବାଧତି"

—ହେ ଭୃତ୍ୟ ! ତୁମ କାନ୍ଧକୁ ଯଦି ବାଧୁଥାଏ ତାହା ହେଲେ କିଛି ସମୟ ବିଶ୍ରାମ କର ।

କାଳିଦାସ ରାଜାଙ୍କର ଏ ବାକ୍ୟ ଶୁଣି ହଠାତ୍ ଉତ୍ତର ଦେଲେ—

"ସ୍କନ୍ଧଂ ନ ବାଧତେ ରାଜନ୍
ତବ ବାଧତି ବାଧତେ"

—ହେ ରାଜା ମୋ କାନ୍ଧକୁ କଷ୍ଟ ବାଧା ହେଉ ନାହିଁ । ବରଂ ତୁମର "ବାଧତି" ଶବ୍ଦ ମୋତେ ବାଧୁଛି । ଭୋଜରାଜା ଏହା ଶୁଣି ଲଜ୍ଜା ଅନୁଭବ କଲେ ଓ କାଳିଦାସଙ୍କ ନିକଟରେ କ୍ଷମାଭିକ୍ଷାପୂର୍ବକ ତାଙ୍କୁ ନବରକୁ ଘେନି ଆସିଲେ । କାଳକ୍ରମେ କାଳିଦାସ ଭୋଜରାଜାଙ୍କର ପ୍ରିୟପାତ୍ର ହୋଇ ପଡ଼ିଲେ ଓ ତାଙ୍କ ପଣ୍ଡିତସଭାରେ ସେ ଶ୍ରେଷ୍ଠ ପଣ୍ଡିତରୂପେ ବିବେଚିତ ହେଲେ । ଥରେ ସୂର୍ଯ୍ୟାସ୍ତ କାଳର ବର୍ଣ୍ଣନା କରି ଭୋଜରାଜା ଉଚ୍ଚାରଣ କଲେ—

"ପରିପତତି ପୟୋନିଧୌ ପତଙ୍ଗଃ"

—ସୂର୍ଯ୍ୟ ସମୁଦ୍ରରେ ପତିତ ହେଉଛନ୍ତି ।

ସେତିକବେଳେ ଭବଭୂତି ହିଁ ଶିଷ୍ୟ ପାଦପୂରଣ କଲେ—

"ସରସିରୁହାମୁଦରେ ମଉଭୃଙ୍ଗଃ"

—ପଦ୍ମକୋଳରେ ମତ୍ତଆଳି ଭ୍ରମର ବାସ କଲା ।

ତାଙ୍କ ପରେ ରାଜସଭାର ଅନ୍ୟ ଏକ ପଣ୍ଡିତ ତୃତୀୟ ପାଦ ପୂରଣ କଲେ—

"ଉପବନତରୁକୋଟରେ ବିହଙ୍ଗଃ"

—ଉଦ୍ୟାନରେ ଥିବା ବୃକ୍ଷକୋଟରରେ ପକ୍ଷୀ ବାସକଲା ।

ଶେଷରେ କାଳିଦାସ ଚତୁର୍ଥ ପାଦ ପୂରଣ କରି ଶ୍ଳୋକ ସାଙ୍ଗ କଲେ—

"ଯୁବତିଜନେଷୁ ଶନୈଃ ଶନୈ ରନଙ୍ଗଃ"

—କନ୍ଦର୍ପ କ୍ରମେ କ୍ରମେ ଯୁବତୀମାନଙ୍କ ଅଙ୍ଗରେ ପ୍ରବେଶ କରୁଛି।"

କାଳିଦାସ ଦେବୀ ବୀଣାପାଣିଙ୍କ ବରଦାନ ବଳରେ ଭୂତ, ବର୍ତ୍ତମାନ ଓ ଭବିଷ୍ୟ ବାଣୀ ଜାଣି ପାରୁଥିଲେ ବୋଲି ଜନଶ୍ରୁତି କହେ। ଥରେ ଭୋଜରାଜା ପାରିଧିକୁ ଯାଇଥିବା ସମୟରେ କୌଣସି ଏକ ଜାମୁଗଛମୂଳରେ ଆଶ୍ରୟ ନେଇଥିଲେ। ସେହି ଜାମୁଗଛଟି ଏକ ପୁଷ୍କରିଣୀର ତଟଦେଶରେ ଥିଲା। ବାନରଟିଏ ସେହି ବୃକ୍ଷର ଶାଖାରେ ରହି ଜାମୁକୋଳି ଖାଉଥିବା ବେଳେ ଶାଖାଗୁଡ଼ିକ ଦୋହଲି ତହିଁରୁ ପାଚିଲା ଜାମୁକୋଳିଗୁଡ଼ିକ ପୁଷ୍କରିଣୀର ଜଳମଧ୍ୟରେ ପତିତ ହୋଇ ଗୁଳୁଗୁଳୁ ଶବ୍ଦ କରୁଥିଲା। ସେହି କଥାକୁ ମନେ ପକାଇ ଭୋଜରାଜା ପରଦିନ ପଣ୍ଡିତସଭାରେ ପାଦପୂରଣ ଲାଗି ପ୍ରଶ୍ନ କଲେ—

"ଗୁଳୁଗଗୁ ଗୁଳୁଗୁଗ୍ ଗୁଳୁ"

କାଳିଦାସଙ୍କ ବ୍ୟତୀତ କୌଣସି ପଣ୍ଡିତ ଏହି ଶ୍ଳୋକ ପାଠ କରି ପାରିଲେ ନାହିଁ; ସେ ଉଚ୍ଚାରଣ କଲେ—

'ଜମ୍ବୁଫଳାନି ପକ୍ୱାନି ପତନ୍ତି ବିମଳେ ଜଳେ।
କପିକମ୍ପିତଶାଖେଭ୍ୟଃ ଗୁଳୁଗଗୁ ଗୁଳୁ ଗୁଗ୍ ଗୁଳୁ"

ବାନର ଦୋହଲାଉଥିବା ଶାଖାରୁ ପାଚିଲା ଜାମୁକୋଳି-ଗୁଡ଼ିକ ନିର୍ମଳ ଜଳରେ ଗୁଳୁ ଗୁଳୁ ଶବ୍ଦକରି ପଡ଼ୁଛି।

କଥିତ ଅଛି ଯେ ଭୋଜରାଜ କୌଣସି ଏକ ପୁଷ୍କରିଣୀରେ ମୁହଁ ଲଗାଇ ପାଣି ପିଉଥିବା ବେଳେ ମାଛଟିଏ ତାଙ୍କ ନାକପୁଡ଼ା ଦେଇ ତାଙ୍କ କପାଳକୁ ଚାଲିଗଲା । ତାପରେ ସେ ତାଙ୍କର କପାଳସ୍ଥିତ ଅସ୍ଥି ନିକଟରେ ଭୀଷଣ ବେଦନା ଅନୁଭବ କଲେ । ବହୁ ବୈଦ୍ୟ ତାଙ୍କୁ ଚିକିତ୍ସା କଲେହେଁ ସେ ଏଥିରୁ କୌଣସି ଉପଶମ ଲାଭ କଲେ ନାହିଁ । ତାଙ୍କର ଅନ୍ତିମକାଳ ଉପସ୍ଥିତ ବୋଲି ମନେ କରି ସ୍ୱର୍ଗର ଦେବତାମାନେ ମଧ୍ୟ ଦୁଃଖ ପ୍ରକାଶ କଲେ ଓ ସେମାନେ ଇନ୍ଦ୍ରଙ୍କୁ ଆପତ୍ତି କରିବାରୁ ଇନ୍ଦ୍ର ସ୍ୱର୍ଗବୈଦ୍ୟ ଅଶ୍ୱିନୀକୁମାରଦୁହିଁଙ୍କୁ ଭୋଜରାଜାଙ୍କ ନିକଟକୁ ମର୍ତ୍ତ୍ୟକୁ ପଠାଇଲେ । ଅଶ୍ୱିନୀକୁମାର ବ୍ରାହ୍ମଣରୂପ ଧାରଣ କରି ଧାରାନଗରୀରେ ପହଞ୍ଚି ରାଜାଙ୍କୁ ଚିକିତ୍ସା କଲେ ଓ ମୋହଚୂର୍ଣ୍ଣ ବଳରେ ରାଜାଙ୍କୁ ଅଚେତ କରାଇ ତାଙ୍କ କପାଳ ଅସ୍ଥିରୁ ସେହି ମୀନଟାକୁ କାଢ଼ି ଆଣିଲେ । ଭୋଜରାଜ ମନ୍ତ୍ରବଳରେ ପୁଣି ଚୈତନ୍ୟ ଲାଭ କଲେ ଓ ଏହି ରୋଗରୁ ସମ୍ପୂର୍ଣ୍ଣ ଆରୋଗ୍ୟ ଲାଭ ପାଇଁ ତାଙ୍କୁ ଉପଦେଶ ଦେଲେ—

ଅଶୀତଜଳାମ୍ଭସା ସ୍ନାନଂ
ପୟଃପାନଂ ବର ସ୍ତ୍ରିୟଃ
ଏତେ ପଥ୍ୟଂ ନରାଣାଂ ଚ

ଅର୍ଥାତ୍ ଉଷ୍ଣଜଳରେ ସ୍ନାନ, ଦୁଗ୍ଧପାନ, ଯୁବତୀ ସ୍ତ୍ରୀ-ସମ୍ଭୋଗ— ଏଗୁଡ଼ିକ ମାନବର ପଥ୍ୟ । ଏହି ତିନୋଟି ପାଦ କହି ଅଶ୍ୱିନୀକୁମାର ୪ର୍ଥ ପାଦ ନ କହି ହଠାତ୍ ଭୋଜରାଜାଙ୍କ

ନାଟକରୁ ଅନ୍ତର୍ହିତ ହେଲେ । ଶେଷରେ କାଳିଦାସ ସର୍ବଙ୍କ ପରେ ଚତୁର୍ଥ ପାଦ ପୂରଣ କଲେ

—ସ୍ନିଗ୍ଧମୁଷ୍ଣଂଚ ଭୋଜନମ୍'
ଅର୍ଥାତ୍ ଚକ୍‌କଣ ଓ ଗରମ ଖାଦ୍ୟ ।

ଥରେ ଭୋଜରାଜା ପ୍ରାତଃ ଭ୍ରମଣ କରୁ କରୁ ଚନ୍ଦ୍ରଙ୍କର ଅସ୍ତାଚଳ ପର୍ବତରେ ମଧୁର ଛବି ଦେଖି ବିମୋହିତ ହେଲେ । ତାପରେ ସେହି ଦିନ ରାଜସଭାରେ ପ୍ରଶ୍ନ କଲେ—

"ଚରମଗିରିନିତମ୍ବେ ଚନ୍ଦ୍ରବିମ୍ବଂ ଲଲମ୍ବେ ।"

ଏଥର ପାଦପୂରଣ ଲାଗି ଭବଭୂତି ହଠାତ୍ ଉଚ୍ଚାରଣ କଲେ—

' ଅରୁଣକିରଣଜାଳୈରନ୍ତରିକ୍ଷେ ଗତର୍କ୍ଷେ
ଚରମଗିରିନିତମ୍ବେ ଚନ୍ଦ୍ରବିମ୍ବଂ ଲଲମ୍ବେ ।"

ଅର୍ଥାତ୍ ରକ୍ତବର୍ଣ୍ଣ ସୂର୍ଯ୍ୟକିରଣ ଯୋଗୁଁ ଆକାଶରୁ ତାରକା ଲୋପ ପାଆନ୍ତେ ଅସ୍ତାଚଳ ନିତମ୍ବରେ ଚନ୍ଦ୍ର ଶୋଭା ପାଉଛନ୍ତି । ପରମୁହୂର୍ତ୍ତରେ ଭୋଜରାଜାଙ୍କ ସଭାର ଅନ୍ୟ ଏକ ପଣ୍ଡିତ ଶ୍ଳୋକ ପାଠ କଲେ—

"ଚଳତି ଶିଶିରବାତେ ମନ୍ଦମନ୍ଦଂ ପ୍ରଭାତେ
ଚରମଗିରିନିତମ୍ବେ ଚନ୍ଦ୍ରବିମ୍ବଂ ଲଲମ୍ବେ ।"

ଅର୍ଥାତ୍ ପ୍ରଭାତକାଳରେ ଶିଶିରପବନ ଧୀରେ ଧୀରେ ଚଳନ୍ତେ ଚନ୍ଦ୍ର ଅସ୍ତପର୍ବତର କଟିପ୍ରଦେଶରେ ଶୋଭା ପାଉଛନ୍ତି । ଶେଷରେ କାଳିଦାସ ତାଙ୍କର ଶ୍ଳୋକ ରଚନା ଭୋଜରାଜାଙ୍କୁ ଶୁଣାଇଲେ—

"ଯୁବତିଜନକଦମ୍ବେ ନ ଥମୁକ୍ତୌଷ୍ଠବମ୍ବେ
ଚରମଗିରିନିତମ୍ବେ ଚନ୍ଦ୍ରବିମ୍ବଂ ଲଲମ୍ବେ ।"

ଅର୍ଥାତ୍ ଯୁବତୀମାନଙ୍କ ବିମ୍ବୋଷ୍ଠ ପତିମାନଙ୍କ ଦଶନ-ଆଘାତରୁ ମୁକ୍ତିଲାଭ କରନ୍ତେ ଚନ୍ଦ୍ର ଅସ୍ତପର୍ବତର କଟିଦେଶରେ ଶୋଭା ପାଉଛନ୍ତି ।

ପ୍ରବାଦ ଅଛି ଯେ ଭୋଜରାଜା ତାଙ୍କର ଅସାମାନ୍ୟ ରୂପବତୀ ପ୍ରେୟସୀ ଭାନୁମତୀଙ୍କ ପ୍ରତି ଏକାନ୍ତ ଆକୃଷ୍ଟ ହୋଇ ରାଜ-କାର୍ଯ୍ୟ ସମ୍ପାଦନାରୁ ବିରତ ହେଲେ ଓ ସର୍ବଦା ଅନ୍ତଃପୁରରେ ବାସକଲେ । ଏଣେ ରାଜକାର୍ଯ୍ୟ ସୁଚ୍ଛୁରୂପେ ସମ୍ପାଦନ କରିବା ଲାଗି ମହାମନ୍ତ୍ରୀ ଓ ଅନ୍ୟାନ୍ୟ ରାଜକର୍ମଚାରୀମାନଙ୍କ ମଧ୍ୟରେ ଭାବନା ପଡ଼ିଲା । ରାଜସଭାର ପଣ୍ଡିତମାନେ ତାଙ୍କର ଶ୍ଳୋକ ପାଠ କରି ଉପଯୁକ୍ତ ପୁରସ୍କାର ରାଜସଭାରୁ ପାଇଲେ ନାହିଁ । ଶେଷରେ ରାଜସଭାରେ ଭାନୁମତୀଙ୍କର ଏକ ନିଖୁଣ ମୂର୍ତ୍ତି ସ୍ଥାପନର ମନ୍ତ୍ରଣା ରାଜାଙ୍କୁ ଦେଲେ ଓ ଏକ ସଙ୍ଗରେ ରାଜକାର୍ଯ୍ୟ ସମ୍ପାଦନା ସଙ୍ଗେ ସଙ୍ଗେ ସେ ଭାନୁମତୀଙ୍କୁ ଦେଖିବାର ସୁଯୋଗ ଲାଭ କରି ପାରିବେ ବୋଲି ରାଜାଙ୍କୁ ଜଣାଇଲେ । ରାଜା ଏଥିରେ ଏକମତ ହେବାରୁ ତାଙ୍କର ଆଦେଶକ୍ରମେ ନଗରର ବିଖ୍ୟାତ ଶିଳ୍ପୀ ରାଣୀ ଭାନୁମତୀଙ୍କର ଏକ ମୃଣ୍ମୟ ପିତୁଳା ଗଠନ କଲେ ।

ମୂର୍ତ୍ତିଟି ଏପରି ନିଖୁଣ ଭାବେ ଗଠିତ ହୋଇଲା ଯେ ରାଜା ନିଜେ ମଧ୍ୟ ସେହି ମୂର୍ତ୍ତିକୁ ସ୍ୱୟଂ ଭାନୁମତୀ ବୋଲି ମନେ କରି ତାର ଅଧରରେ ଚୁମ୍ବନ ଦେଲେ । ରାଜଦରବାରର ସମସ୍ତେ ଶିଳ୍ପୀକୁ ଧନ୍ୟବାଦ ଦେବା ସମୟରେ କାଳିଦାସ ବାଧା ଦେଇ କହିଲେ ଯେ ମୂର୍ତ୍ତିଟି ନିଖୁଣ ହୋଇ ନାହିଁ । ତାଙ୍କର ଏ ଉକ୍ତି ଶୁଣି ଶିଳ୍ପୀ ଅଭିମାନରେ ତାର ହସ୍ତସ୍ଥିତ ତୂଳୀକୁ ଫିଙ୍ଗି ଦିଅନ୍ତେ ସେଥିରୁ କେତେ ବୁନ୍ଦା କଳାରଙ୍ଗ ଭାନୁମତୀମୂର୍ତ୍ତିର ବାମ ଜଙ୍ଘରେ ପଡ଼ିଗଲା । ତାପରେ କାଳିଦାସ "ଏବେ ଠିକ ହୋଇଲା ବୋଲି" କହିଲେ । ତାଙ୍କର ଏ ରହସ୍ୟ କେହି ବୁଝି ନ ପାରିବାରୁ ସେ ନିଜେ ସମସ୍ତଙ୍କର ସଂଶୟମୋଚନ କରିବା ଲାଗି କହିଲେ ଯେ ପ୍ରଥମେ ମୂର୍ତ୍ତିର ବାମ ଜଙ୍ଘରେ ତିଳଚିହ୍ନ ନଥିଲା । ବର୍ତ୍ତମାନ ଶିଳ୍ପୀ ତୂଳୀଟିକୁ ଫିଙ୍ଗି ଦେବାରୁ କେତେକ ବୁନ୍ଦା କାଳି ଛିଟିକି ଯାଇ ମୂର୍ତ୍ତିର ବାମ ଜଙ୍ଘରେ ପଡ଼ିବାରୁ ତାହା ଭାନୁମତୀ ରାଣୀଙ୍କର ବାମ ଜଙ୍ଘସ୍ଥିତ ତିଳଚିହ୍ନ ସହ ସାମ୍ୟ ହୋଇଲା । ଏଣୁ ବର୍ତ୍ତମାନ ମୂର୍ତ୍ତିଟିକୁ ଅବିକଳ ବୋଲି କୁହାଯାଇପାରେ । ରାଜା ଏହା ଶୁଣି ଆଶ୍ଚର୍ଯ୍ୟ ହୋଇଲେ ଓ ଭାନୁମତୀଙ୍କର ବାମ ଜଙ୍ଘରେ ତିଳଚିହ୍ନକୁ ସେ ଏ ପର୍ଯ୍ୟନ୍ତ ନ ଦେଖିଥିବା ସ୍ଥଳେ କାଳିଦାସ କିପରି ଜାଣିଲେ ବୋଲି ହଠାତ୍ କ୍ରୋଧଜରଜର ହୋଇ ଅନ୍ତଃପୁରକୁ ଯାଇ ଭାନୁମତୀଙ୍କର ଅଙ୍ଗରୁ ବସନ କାଢ଼ି ତାଙ୍କ ବାମ ଜଙ୍ଘର ତିଳଚିହ୍ନକୁ ସ୍ୱଚକ୍ଷୁରେ ଦେଖିବାରୁ କାଳିଦାସଙ୍କ ପ୍ରତି ତାଙ୍କର ଘୃଣା ଓ କ୍ରୋଧ ଦ୍ୱିଗୁଣିତ ହୋଇ ଉଠିଲା । ଭାନୁମତୀଙ୍କ ସହ କାଳିଦାସଙ୍କର ଗୁପ୍ତପ୍ରଣୟ ଅଛି ବୋଲି ସେ ନିଶ୍ଚିତ କରି ଭାନୁମତୀଙ୍କୁ କାରାଗାରରେ ନିକ୍ଷେପ କଲେ ଓ କାଳିଦାସଙ୍କୁ ମୃତ୍ୟୁଦଣ୍ଡରେ ଦଣ୍ଡିତ କଲେ । ତାଙ୍କର ମହାମନ୍ତ୍ରୀ ବୁଦ୍ଧିସାଗର ରାଜାଙ୍କର ଏ ଆଦେଶ ଅମୂଳକ

ବୋଲି ମନେ କରି, କାଳିଦାସଙ୍କୁ ନିଜ ଗୃହରେ ଗୋପନରେ ରଖାଇ ଏକ ପଶୁରକ୍ତ ରାଜାଙ୍କୁ ଦେଖାଇ କାଳିଦାସଙ୍କୁ ହତ୍ୟା କରି ଯାଇଅଛି ବୋଲି ପ୍ରମାଣ ଦେଲେ । ରାଣୀ ଭାନୁମତୀ ତେଣେ ଭୋଜରାଜାଙ୍କର କାରାଗାରରେ ବନ୍ଦିନୀ—ଏଣେ ମହାକବି କାଳିଦାସଙ୍କର ମହାମନ୍ତ୍ରୀ ବୁଦ୍ଧିସାଗରଙ୍କ ଗୃହରେ ଅଜ୍ଞାତ ବାସ ।

ଏହିପରି ଦିନ ପରେ ଦିନ ମାସ ପରେ ମାସ ଓ ବର୍ଷ ପରେ ବର୍ଷ ବିତିଗଲା । ସରସ୍ୱତୀଙ୍କ କୃପାରୁ କାଳିଦାସ ଭୂତ ଭବିଷ୍ୟ ଓ ବର୍ତ୍ତମାନ ଜାଣି ପାରୁଥିବା ହେତୁ ଭାନୁମତୀଙ୍କର ଜଙ୍ଘସ୍ଥିତ ତିଳଚିହ୍ନ କହିଲେ ସିନା, କିନ୍ତୁ ପ୍ରକୃତରେ ରାଣୀ ଭାନୁମତୀଙ୍କ ସହିତ ତାଙ୍କର ଗୁପ୍ତପ୍ରଣୟ ନ ଥିଲା । କିଛି କାଳ ଅନ୍ତେ ଭୋଜରାଜାଙ୍କ ପୁତ୍ର ମୃଗୟା ନିମନ୍ତେ ବନକୁ ଯାଇଥିବା ଅବସ୍ଥାରେ ଏଣେ ତେଣେ ଭ୍ରମଣ କରୁ କରୁ ସନ୍ଧ୍ୟା ହେଲା । ତାଙ୍କର ସହଗାମୀମାନେ ତାଙ୍କୁ ନ ପାଇ ଏଣେ ତେଣେ ଖୋଜି ଶେଷରେ ନଗରକୁ ଫେରି ଆସିଲେ । ସନ୍ଧ୍ୟା ସମୟରେ ସେ ଅନ୍ୟ କୌଣସି ଉପାୟ ନ ଦେଖି ପାଖରେ ଥିବା ଏକ ବୃକ୍ଷରେ ରାତିଟି କଟାଇବାକୁ ସିଦ୍ଧାନ୍ତ କଲେ । ସେ ବୃକ୍ଷରେ ଚଢ଼ି ଦେଖନ୍ତି ତ ଏକ ବିରାଟ ଭଲ୍ଲୁକ ପୂର୍ବରୁ ସେ ବୃକ୍ଷରେ ଚଢ଼ିଛି । ତା ଦେଖି ସେ ଭୟରେ ଥରିବାକୁ ଲାଗିଲେ । ଭଲ୍ଲୁକ ବ୍ୟାଘ୍ର ଭୟରେ ସେହି ବୃକ୍ଷରେ ରାତିଟି କଟାଇବାକୁ ଆସିଥିଲା । ଏଣେ ରାଜପୁତ୍ରଙ୍କୁ ଭୟରେ ଚିତ୍କାର କରିବାର ଦେଖି ତାଙ୍କୁ ସାନ୍ତ୍ୱନା ଦେଲା ଓ ତାଙ୍କୁ ନ ମାରିବା ଲାଗି ପ୍ରତିଜ୍ଞା କଲା । ଦୁହେଁ ଏକ ବିପଦର ସମ୍ମୁଖୀନ ହୋଇଥିବା ହେତୁ ଉଭୟେ ସେହି ବୃକ୍ଷରେ ମିତ୍ରତାପାଶରେ ଆବଦ୍ଧ ହେଲେ । ଇତ୍ୟବସରରେ ଏକ କ୍ଷୁଧାର୍ତ୍ତ ବ୍ୟାଘ୍ର ବୃକ୍ଷସ୍ଥିତ ଭଲ୍ଲୁକ ଓ

ରାଜପୁତ୍ର ଉଭୟଙ୍କୁ ଖାଇବା ଲାଗି ସେ ବୃକ୍ଷମୂଳରେ ଜଗିରହିଲା । ରାଜପୁତ୍ର କ୍ଳାନ୍ତ ହୋଇଥିବାରୁ ନିଦ୍ରାରେ ଘାରି ହୁଅନ୍ତେ ଭଲ୍ଲୁକ ନିଜ ଜଙ୍ଘରେ ରାଜପୁତ୍ରଙ୍କ ମୁଣ୍ଡ ରଖି ତାଙ୍କୁ ଶୋଇବା ଲାଗି ଅନୁରୋଧ କଲା । ରାଜପୁତ୍ର ଭଲ୍ଲୁକର ଜଙ୍ଘରେ ମୁଣ୍ଡ ରଖି ନିଶ୍ଚିନ୍ତରେ ଶୟନ କଲେ । ଏତିକି ବେଳେ ବ୍ୟାଘ୍ର ଭଲ୍ଲୁକକୁ କହିଲା, "ମନୁଷ୍ୟକୁ ବିଶ୍ୱାସ କରିବା ଉଚିତ ନୁହେଁ । ସକାଳ ହେଲେ ସେ ଅସ୍ତ୍ର ଶସ୍ତ୍ର ସାହାଯ୍ୟରେ ତୁମକୁ ହତ୍ୟା କରିବ । ଏଣୁ ଶୀଘ୍ର ତାଙ୍କୁ ତଳକୁ ପକାଇ ଦେଲେ ମୁଁ ଖାଇ ଆନନ୍ଦରେ ପଳାଇବି । ତୁମେ ମଧ୍ୟ ମୋ ଉପଦ୍ରବରୁ ରକ୍ଷା ପାଇଯିବ ।" ବ୍ୟାଘ୍ରର ଏତାଦୃଶ କପଟବଚନରେ ଭଲ୍ଲୁକ ଭୁଲି ନ ଯାଇ କହିଲା— "ମିତ୍ରତା ସମ୍ବନ୍ଧ ହୋଇଥିବା ହେତୁ ରାଜପୁତ୍ରଙ୍କୁ ମୁଁ କେବେ ହେଲେ ତଳକୁ ଫିଙ୍ଗି ଦେବି ନାହିଁ । କାରଣ ତଦ୍ଦ୍ୱାରା ମୁଁ ମିତ୍ରଦ୍ରୋହୀ ହେବି ଓ ସେହି ପାପରେ ଚିରକାଳ ନରକରେ ବାସ କରିବି ।" ବ୍ୟାଘ୍ର ଏହା ଶୁଣି ନିରୁତ୍ତର ହୋଇ ସେହି ବୃକ୍ଷମୂଳରେ ଜଗି ବସିଲା ।

ଅର୍ଦ୍ଧରାତ୍ରି ପରେ ରାଜପୁତ୍ର ନିଦ୍ରା ତ୍ୟାଗ କଲେ ଓ ଭଲ୍ଲୁକ ତାଙ୍କୁ ଜାଗ୍ରତ ହୋଇ ରହିବା ଲାଗି କହି ନିଜେ ଶୟନ କଲା । କିନ୍ତୁ ମନୁଷ୍ୟ ଉପରେ ତାର ପୂର୍ଣ୍ଣ ବିଶ୍ୱାସ ନ ଥିବାରୁ ସେ ରାଜପୁତ୍ରଙ୍କ ନିକଟରେ ଶୋଇଲା, ମାତ୍ର ନଖଦ୍ୱାରା ବୃକ୍ଷର ଶାଖାକୁ ଜାବୋଡ଼ି ଧରିଥିଲା । ରାତ୍ରିର ଦ୍ୱିତୀୟ ପ୍ରହରରେ ଭଲ୍ଲୁକକୁ ଗାଢ଼ ନିଦ୍ରା ହୁଅନ୍ତେ ବ୍ୟାଘ୍ର ରାଜପୁତ୍ରଙ୍କୁ ସେହିପରି କପଟବଚନ କହିଲା । ରାଜପୁତ୍ର ବ୍ୟାଘ୍ରର କପଟବଚନରେ ଭୁଲିଗଲେ । ସେ ଭାବିଲେ ଯେ ଭଲ୍ଲୁକକୁ ତଳକୁ ପେଲିଦେଲେ ଏକ ସଙ୍ଗରେ

ଦୁଇଟି ଶତ୍ରୁଦାଉରୁ • ସେ ରକ୍ଷା ପାଇଯିବେ । ଭଲ୍ଲୁକକୁ ବ୍ୟାଘ୍ର ଭକ୍ଷଣ କରି ଆନନ୍ଦରେ ଫଳାଇଯିବ ଓ ସେ ସକାଳ ହେଲେ ନିର୍ଦ୍ଦ୍ୱନ୍ଦ୍ୱରେ ନଗରକୁ ଫେରିଯିବେ । ଏହିପରି ଚିନ୍ତାକରି ସେ ଭାଲୁକୁ ତଳକୁ ପେଲିଦେଲେ । ମାତ୍ର ଭାଲୁ ଆଗରୁ ରାଜପୁତ୍ରଙ୍କୁ ଚଞ୍ଚଳଚିତ୍ତ ଜାଣି ପାରି ନଖରେ ଗଛକୁ ଜାବୋଡ ଧରିଥିବାରୁ ସହଜରେ ତଳେ ପଡ଼ିଲା ନାହିଁ । ତାର ନିଦ୍ରାଭଙ୍ଗ ହୁଅନ୍ତେ ସେ ରାଜପୁତ୍ରଙ୍କୁ ତାଙ୍କର ଏପରି ହୀନ ଆଚରଣ ଦେଖି ଶତ ଧିକ୍‌କାର କଲା ଓ ମିତ୍ରଦ୍ରୋହୀ ନ ହେବା ଲାଗି ରାଜପୁତ୍ରଙ୍କୁ ଜୀବନରେ ନ ମାରି ତାର ନଖ ସାହାଯ୍ୟରେ ରାଜପୁତ୍ରଙ୍କ ଜିଭରେ "ସସେମିରା" ବୋଲି ଚାରିଗୋଟି ଅକ୍ଷର ଲେଖିଦେଲା । କ୍ରମେ ରାତି ପାହି ସକାଳ ହୁଅନ୍ତେ ବ୍ୟାଘ୍ର ଜଙ୍ଗଲକୁ ପଳାଇଲା । ଭଲ୍ଲୁକ ମଧ୍ୟ ବନକୁ ଫେରିଗଲା ଓ ରାଜପୁତ୍ର ବୃକ୍ଷରୁ ଅବତରଣ କରି ପାଗଳ ପରି 'ସସେମିରା' 'ସସେମିରା' ଉଚ୍ଚାରଣ କରି ଏଣେତେଣେ ବୁଲିବାକୁ ଲାଗିଲେ । କିଛି ଦିନ ପରେ ପ୍ରଜାମାନେ ତାଙ୍କୁ ଚିହ୍ନିପାରି ଭୋଜରାଜାଙ୍କ ନଗରରେ ପହଞ୍ଚାଇଦେଲେ । ଭୋଜରାଜ ପୁତ୍ରକୁ ଏପରି ଦୁର୍ଦ୍ଦଶାପନ୍ନ ଦେଖି ଦୁଃଖରେ ଅସ୍ଥିର ହୋଇ ଉଠିଲେ । ବହୁ ବୈଦ୍ୟ, ତାନ୍ତ୍ରିକ, କବିରାଜ ତାଙ୍କୁ ଯେତେ ପ୍ରକାର ଚିକିତ୍ସା କଲେହେଁ ସେ କୌଣସିଥିରେ ଆରୋଗ୍ୟ ଲାଭ କଲେନାହିଁ । ଭୋଜରାଜା ଶେଷରେ ନିରୁପାୟ ହୋଇ ପୁତ୍ରଚିନ୍ତାରେ କାଳ କଟାଇବାକୁ ଲାଗିଲେ ।

ସେତିକବେଳେ ମନ୍ତ୍ରୀ ବୁଦ୍ଧିସାଗରଙ୍କ ଗୃହରେ କାଳିଦାସ ଅଜ୍ଞାତବାସ କରୁଥାଆନ୍ତି । ଭୋଜରାଜ ପୁତ୍ର ଶୋକରେ ମ୍ରିୟମାଣ ବୋଲି ଶୁଣିପାରି ସେ ଏକାନ୍ତ ଦୁଃଖିତ ହେଲେ ଓ ତାର ପ୍ରତିକାର

ନିମିତ୍ତ ମନ୍ତ୍ରୀଙ୍କୁ ଜଣାଇଲେ । ତାଙ୍କର ଯୋଜନା ଅନୁସାରେ ସେ ନାରୀବେଶ ଧାରଣ କରି ମନ୍ତ୍ରୀ ବୁଦ୍ଧିସାଗରଙ୍କ କନ୍ୟାରୂପେ ନିଜକୁ ପରିଚୟ ଦେଇ ମନ୍ତ୍ରୀଙ୍କ ସହ ରାଜନବରରେ ଉପସ୍ଥିତ ହେଲେ । ତାଙ୍କର ଆଦେଶାନୁସାରେ ସେ ରାଜପୁତ୍ରଙ୍କୁ ସମ୍ମୁଖରେ ରଖି ନିଜେ ଏକ ପର୍ଦ୍ଦାର ଅନ୍ତରାଳରେ ରହି ରାଜପୁତ୍ରଙ୍କ ପ୍ରତି ଲକ୍ଷ୍ୟ କରି ପ୍ରଶ୍ନ କଲେ —

“ସଦ୍‌ଭାବପ୍ରତିପନ୍ନାନାଂ ବଞ୍ଚନେ କା ବିଦଗ୍ଧତା
ଅଙ୍କମାରୁହ୍ୟ ସୁପ୍ତାନାଂ ହନ୍ତୁଂ କିଂ ନାମ ପୌରୁଷମ୍ ।

ଅର୍ଥାତ୍ ସଦ୍‌ଭାବ ଜନ୍ମିଥିବା ବ୍ୟକ୍ତିଙ୍କୁ ପ୍ରତାରିତ କରିବାରେ କୌଣସି ଚତୁରତା ଥାଏ କି ? କୋଳକୁ ଆଉଜି ଶୋଇଥିବା ପ୍ରାଣୀକୁ ହତ୍ୟା କରିବା କଅଣ ପୁରୁଷପଣିଆ ?

ଏହି ଶ୍ଳୋକ ଶୁଣିଲା ପରେ ରାଜପୁତ୍ର ‘ସସେମିରା’ ରୁ ‘ସ’ ଲୋପ କରି କେବଳ ‘ସେମିରା’ ‘ସେମିରା’ କହି ପ୍ରଳାପ କଲା । ତାପରେ ନାରୀବେଶଧାରୀ କାଳିଦାସ ତାଙ୍କୁ ଲକ୍ଷ୍ୟ କରି ଦ୍ୱିତୀୟ ଶ୍ଳୋକ ପାଠ କଲେ—

“ସେତୁଂ ଗତ୍ୱା ସମୁଦ୍ରସ୍ୟ ଗଙ୍ଗାସାଗରସଙ୍ଗମମ୍
ବ୍ରହ୍ମହନ୍ତା ପ୍ରମୁଚ୍ୟେତେ ମିତ୍ରଦ୍ରୋହୀ ନ ମୁଚ୍ୟତେ”

ଅର୍ଥାତ୍ ସମୁଦ୍ରର ସେତୁବନ୍ଧ ଓ ଗଙ୍ଗା ସାଗର ସଙ୍ଗମରେ ସ୍ନାନ କଲେ ବ୍ରହ୍ମହନ୍ତା ମୁକ୍ତ ପାଏ କିନ୍ତୁ ମିତ୍ରଦ୍ରୋହୀର ପାପ ମୋଚନ ହୁଏ ନାହିଁ ।

ଏ ଶ୍ଳୋକ ଶୁଣିଲା ପରେ ରାଜପୁତ୍ର 'ସେମିରା' ରୁ 'ସେ' ଲୋପ କରି କେବଳ 'ମିରା' 'ମିରା' ବୋଲି ଉଚ୍ଚାରଣ କରିବାକୁ ଲାଗିଲା । ତା ପରେ କାଳିଦାସ ତାଙ୍କୁ ଲକ୍ଷ୍ୟ କରି ତୃତୀୟ ଶ୍ଳୋକ ପାଠକଲେ—

"ମିତ୍ରଦ୍ରୋହୀ କୃତଘ୍ନଶ୍ଚ ଯଶ୍ଚ ବିଶ୍ୱାସଘାତକଃ
ତେ ତ୍ରୟଂ ନରକଂ ଯାନ୍ତି ଯାବତ୍ ଚନ୍ଦ୍ରଦିବାକରୌ"

ଅର୍ଥାତ୍ ମିତ୍ରଦ୍ରୋହୀ, କୃତଘ୍ନ ଓ ବିଶ୍ୱାସଘାତକ—ଏ ତିନହେଁ ଚନ୍ଦ୍ର, ସୂର୍ଯ୍ୟ ଥିବା ଯାଏ ନରକରେ ବାସ କରନ୍ତି । ଏ ଶ୍ଳୋକ ଶୁଣିଲା ପରେ ରାଜପୁତ୍ର ମିରା' 'ମିରା' ଉଚ୍ଚାରଣ ନକରି 'ମି' ଶବ୍ଦଟି ଲୋପ କରି କେବଳ 'ରା' 'ରା' ଉଚ୍ଚାରଣ କରିବାକୁ ଲାଗିଲା । ଏହି ଅବସରରେ କାଳିଦାସ ତାଙ୍କୁ ଲକ୍ଷ୍ୟ କରି ଚତୁର୍ଥ ଶ୍ଳୋକ ପାଠକଲେ—

"ହେ ରାଜନ ନିଜପୁତ୍ରସ୍ୟ ଯଦି କଲ୍ୟାଣମିଚ୍ଛସି
ଦେହି ଦାନଂ ଦ୍ୱିଜାତିଭ୍ୟୋ ଦେବତାରାଧନଂ କୁରୁ ।"

ଅର୍ଥାତ୍ ହେ ରାଜା, ଆପଣ ଯଦି ନିଜ ପୁତ୍ରର ମଙ୍ଗଳ ଇଚ୍ଛା କରନ୍ତି, ତାହାହେଲେ ବ୍ରାହ୍ମଣମାନଙ୍କୁ ଧନରତ୍ନ ଦାନ ଦିଅନ୍ତୁ ଓ ଦେବତା ଆରାଧନା କରନ୍ତୁ ।

ତାଙ୍କର ଏ ଶ୍ଳୋକ ଶୁଣି ରାଜପୁତ୍ର 'ରା' 'ରା' ଉଚ୍ଚାରଣ ବନ୍ଦ କରି ପ୍ରକୃତିସ୍ଥ ହେଲେ ଓ ବନ ମଧ୍ୟରେ ଘଟିଥିବା ସମସ୍ତ କାହାଣୀ ଦରବାରରେ ଶୁଣାଇ ସମସ୍ତଙ୍କୁ ଚମତ୍କୃତ କଲେ

ଭୋଜରାଜ ମଧ୍ୟ ଏକାନ୍ତ ବିସ୍ମିତ ହୋଇ ନାରୀବେଶଧାରୀ କାଳିଦାସଙ୍କ ପ୍ରତି ଲକ୍ଷ୍ୟ ରଖି ପ୍ରଶ୍ନ କଲେ—

"ଗୃହେ ବସସି କୌମାରି ! ଅଟବ୍ୟାଂ ନୈବ ଗଚ୍ଛସି
ଋକ୍ଷବ୍ୟାଘ୍ରମନୁଷ୍ୟାଣାଂ କଥଂ ଜାନାସି ଭାଷିତମ୍ ।"

ଅର୍ଥାତ୍ ହେ କୁମାରୀ ! ତୁମେ ସର୍ବଦା ଗୃହରେ ବାସ କର । କେବେହେଲେ ବନକୁ ଯାଅ ନାହିଁ । ଏଣୁ ଭଲ୍ଲୁକ ବ୍ୟାଘ୍ର ଓ ମନୁଷ୍ୟ—ଏ ତିନଙ୍କର କଥା ତୁମେ କପରି ଜାଣିଲ ?

ରାଜାଙ୍କର ଏ ପ୍ରଶ୍ନରେ କାଳିଦାସ ତତ୍କ୍ଷଣାତ୍ ପ୍ରସନ୍ନ ବଦନରେ ଶ୍ଲୋକ ପାଠ କଲେ—

"ଦେବଦ୍ୱିଜ ପ୍ରସାଦେନ ଜିହ୍ୱାଗ୍ରେ ମେ ସରସ୍ୱତୀ
ସର୍ବଂ ଜାନାମି ତେନାହଂ ଭାନୁମତ୍ୟାସ୍ତିଳଂ ଯଥା"

ଅର୍ଥାତ୍ ଦେବତା ଓ ବ୍ରାହ୍ମଣଙ୍କ ଦୟାରୁ ସରସ୍ୱତୀ ମୋ ଜିହ୍ୱାରେ ବିରାଜମାନ କରନ୍ତି । ତେଣୁ ମୁଁ ରାଣୀ ଭାନୁମତୀଙ୍କ ତିଳଚିହ୍ନ ଜାଣିଲା ଭଳି ସବୁ କଥା ଜାଣିପାରେ । ଏହା ଶୁଣି ଭୋଜରାଜା ପୂର୍ବକଥା ମନେ ପକାଇ ଏକାନ୍ତ ଲଜ୍ଜିତ ହେଲେ ଓ ସେ ନାରୀ ଯେ କାଳିଦାସ ଏଥିରେ ତାଙ୍କର ସନ୍ଦେହର ଅବକାଶ ରହିଲା ନାହିଁ । ସେ ତତ୍କ୍ଷଣାତ୍ କାଳିଦାସଙ୍କ ନିକଟରେ କ୍ଷମା-ଭିକ୍ଷା କଲେ ଓ ତାଙ୍କୁ ପୁଣି ରାଜସଭାରେ ଶ୍ରେଷ୍ଠସ୍ଥାନ ଦେଲେ । ରାଣୀ ଭାନୁମତୀଙ୍କୁ ଦୋଷଶୂନ୍ୟା ବୋଲି ମନେ କରି ତାଙ୍କୁ ମଧ୍ୟ କାରାବନ୍ଧନରୁ ମୁକ୍ତ କଲେ ।

କିମ୍ବଦନ୍ତୀ କହେ, ଥରେ କାଳିଦାସ ବିଲ ହଣ କବିଙ୍କ ସହିତ ଶାସ୍ତ୍ରଚର୍ଚ୍ଚାରେ ମଗ୍ନ ଥିଲାବେଳେ ବିରାଡ଼ିଟିଏ ଦୁଗ୍ଧପାନ

କରୁଥିଲା । ବଲ୍‌ହଣ କଅଣ ବୋଲି କାଳିଦାସଙ୍କୁ ପଗ୍ଭରନ୍ତେ ସେ ତତ୍‌କ୍ଷଣାତ୍ ଉତ୍ତର ଦେଲେ—

"ଦୁଗ୍‌ଧଂ ପିବନ୍ତି ବିଡ଼ାଳାଃ"

ଅର୍ଥାତ୍ ବିଗ୍ଭଡ଼ିଟିଏ ଦୁଧ ପିଉଛି । ଏହା ଶୁଣି ବଲ୍‌ହଣ କହିଲେ ଯେ ଉକ୍ତ ଶ୍ଳୋକରେ 'ଚ' 'ବା' 'ତୁ' 'ହି' ପ୍ରଭୃତି କୌଣସି ଅବ୍ୟୟ ଯୋଗ ହୋଇ ନ ଥିବାରୁ ଓ ସେଥିରେ କେବଳ କର୍ତ୍ତା "ବିଡ଼ାଳାଃ" କର୍ମ "ଦୁଗ୍‌ଧଂ" ଓ କ୍ରିୟା "ପିବନ୍ତି" ଥିବାରୁ ତାହା ଶ୍ରୁତିକର ହେଲା ନାହିଁ । ତେଣୁ କାଳିଦାସ ତତ୍‌କ୍ଷଣାତ୍ 'ଚ' 'ବା' 'ତୁ' 'ହି' ଏହି ସ୍ୱରଗୋଟି ଅବ୍ୟୟ ଯୋଗକରି ତାକୁ ଏକପାଦ କରି ଶ୍ଳୋକଟିଏ ରଚନା କରି କବି ବଲ୍ ହଣଙ୍କୁ ଶୁଣାଇଲେ—

"ପ୍ରାତରୁତ୍‌ଥାୟ ଭୂପାଳ !
ମୁଖପ୍ରକ୍ଷାଳନଂ କୁରୁ
ନଗରେ ଘଷତେ କୁକ୍‌କୁଟଃ
ଚବାତୁହି ଚବାତୁହି "

ଅର୍ଥାତ୍ ହେ ରାଜା, ସକାଳ ହେଲା । ଏଣୁ ଉଠି ମୁଖ ପ୍ରକ୍ଷାଳନ କରନ୍ତୁ । ନଗରର ଘରିଆଡ଼େ କୁକ୍‌କୁଟମାନେ 'ଚବାତୁହି' ଚବାତୁହି' ଶବ୍ଦ ଆରମ୍ଭ କଲେଣି ।

ଏହା ଶୁଣି କବି ବଲ୍‌ହଣ ଏକାନ୍ତ ପ୍ରୀତ ହୋଇ କାଳିଦାସଙ୍କୁ ଆଲିଙ୍ଗନ କରି ତାଙ୍କୁ ଶ୍ରେଷ୍ଠ କବି ରୂପେ ସମ୍ମାନିତ କଲେ ।

ପ୍ରବାଦ ଅଛି ଯେ ଥରେ ଭବଭୂତି କାଳିଦାସଙ୍କୁ ସମ୍ୟକ୍-ରୂପେ ପରୀକ୍ଷା କରିବା ଲାଗି ମନ ବଳାଇଲେ ଓ ଶ୍ରୀହର୍ଷ ରାଜାଙ୍କ ସମ୍ମୁଖରେ ଏକ ଶ୍ଲୋକର ପାଦପୂରଣ ପାଇଁ କାଳିଦାସଙ୍କୁ ଆହ୍ୱାନ ଦେଲେ । ଉକ୍ତ ଶ୍ଲୋକର ଶେଷପାଦ ଥିଲା "କଷ୍ଟସ୍ୟ କାନ୍ୟା ଗତିଃ"—ଅର୍ଥାତ୍ କଷ୍ଟ ଲୋକର ଅନ୍ୟ ଗତି କଣ ? କାଳିଦାସ ପରଦିନ ଏହି ଶ୍ଲୋକ ପାଠ କରିବେ ବୋଲି କହି ରାଜସଭାରୁ ବିଦାୟ ନେଲେ । ପରଦିନ ପ୍ରତ୍ୟୁଷରୁ କାଳିଦାସ ଶଯ୍ୟା ତ୍ୟାଗ କରି ଏକ ଛଦ୍ମ ସନ୍ନ୍ୟାସୀ ବେଶ ଧାରଣ କରି ଏକ ହସ୍ତରେ ଛାଗଳଟିଏ ଓ ଅନ୍ୟ ହସ୍ତରେ ଶାଣିତ ଛୁରୀଟିଏ ଧରି ଭବଭୂତି ସ୍ନାନ କରୁଥିବା ଘାଟର ସାମନାରେ ତାଙ୍କୁ ଦେଖାଇଲା ଭଳି ଅନ୍ୟମନସ୍କ କରି ଛାଗଳକୁ ହତ୍ୟାକରିବା ଲାଗି ଛୁରୀଟିକୁ ପଥର ପାହାଚରେ ଶାଣ କରିବାକୁ ଲାଗିଲେ । ଛଦ୍ମ-ବେଶୀ କାଳିଦାସଙ୍କର ଏତାଦୃଶ ଆଚରଣ ଦେଖି ଭବଭୂତି କୌତୂହଳ ବିସ୍ମିତ ହୋଇ ତାଙ୍କୁ ପ୍ରଶ୍ନ କଲେ—"ଭିକ୍ଷୋ ! ମାଂସ-ନିଷେବଣଂ ପ୍ରକୁରୁଷେ ? ହେ ଭିକ୍ଷୁ ! ଆପଣ ମାଂସ ଭକ୍ଷଣ କରନ୍ତି କି ? କାଳିଦାସ ହଠାତ୍ ଉତ୍ତର ଦେଲେ—

"କିଂ ତେନ ମଦ୍ୟଂ ବିନା !"

ସେ କଅଣ ପୁଣି ବିନା ମଦରେ ! ଭବଭୂତି ଆଶ୍ଚର୍ଯ୍ୟ ହେଲେ ଓ ପୁଣି ପଚାରିଲେ—

"ମଦ୍ୟଂ ଚାପି ତବ ପ୍ରିୟମ୍"

ମଦ ମଧ୍ୟ ଆପଣଙ୍କର ପ୍ରିୟ ବସ୍ତୁ ! କାଳିଦାସ ଉତ୍ତର ଦେଲେ—

"ପ୍ରିୟମହୋ ବାରାଙ୍ଗନାଭିଃ ସହ"

ଖାଲି ମଦ କି, ତା ପୁଣି ବେଶ୍ୟାମାନଙ୍କ ସହିତ । ଭବଭୂତି ପୁଣି ଆଶ୍ଚର୍ଯ୍ୟ ହୋଇ ପଚାରିଲେ—

"ଚାପାମର୍ଥରୁଚଃ କୁତସ୍ତବ ଧନଂ"

ସେମାନେ ଧନକୁ ଭଲ ପାଆନ୍ତି, ତୁମେ କେଉଁଠାରୁ ଧନରତ୍ନ ପାଅ ?

କାଳିଦାସ ଉତ୍ତର ଦେଲେ—

"ଚୈର୍ଯ୍ୟେଣ ଦ୍ୟୂତେନ ବା"

ଚୋରି ବା ଜୁଆଖେଳ ଯୋଗୁଁ । ଭବଭୂତିଙ୍କର ବିସ୍ମୟର ସୀମା ରହିଲା ନାହିଁ । ସେ ପୁଣି ପ୍ରଶ୍ନ କଲେ—

"ଚୈର୍ଯ୍ୟଦ୍ୟୂତପରିଗ୍ରହୋଽପି ଭବତଃ ?"

ଆପଣ ପୁଣି ଚୋରି ଓ ଜୁଆଖେଳ କରନ୍ତି ? ଶେଷରେ କାଳିଦାସ ପାଦପୂରଣ କଲେ—

"ନଷ୍ଟସ୍ୟ କାନ୍ୟା ଗତିଃ"

ଯେ ନଷ୍ଟ ହେଲା ତାର ଆଉ ଗତି କ'ଣ ?

ଭିକ୍ଷୁଠାରୁ ଏ ଉତ୍ତର ଶୁଣି ଭବଭୂତି ଜାଣି ପାରିଲେ ଯେ ସେ ନଷ୍ଟସ୍ବ କାଳିଦାସ । ଏଣୁ ସେ ତାଙ୍କୁ ଆଲିଙ୍ଗନ କରି ଶ୍ରେଷ୍ଠ କବି ବୋଲି ମାନି ନେଲେ ।

ସରସ୍ୱତୀଙ୍କର ନଗ୍ନବର୍ଣ୍ଣନା କରିବାରୁ ସେ ତାଙ୍କୁ ଅଭିଶାପ ଦେଇଥିଲେ ଯେ ସେ ସ୍ତ୍ରୈଣ ଓ ବେଶ୍ୟାସକ୍ତ ହେବେ ଏବଂ ବିଦ୍ୟାନଗରୀ କାଶୀରେ ଜିତି ପାରିବେ ନାହିଁ । ଏଣୁ କଥିତ ଅଛି ଯେ ଭୋଜରାଜା ଥରେ ତାଙ୍କ ପ୍ରତି ଅନୁରକ୍ତ ହୋଇ ତାଙ୍କୁ କିଛି ଯାଚନା କରିବାକୁ କହନ୍ତେ ସେ ରାଜକୋଷରୁ ଧନରତ୍ନ ନ ମାଗି ସମ୍ମୁଖରେ ଦଣ୍ଡାୟମାନା ଏକ ନବୀନବାଳାକୁ ପ୍ରାର୍ଥନା କରିଥିଲେ—

"ନ ଯାଚେ ଗଜାଳିଂ ନ ବା ବାଜିରାଜିମ
ନ ବିତ୍ତେଷୁ ଚିତ୍ତଂ ମଦୀୟଂ କଦାଚିତ୍ ।'
ଇୟଂ ସୁସ୍ତନୀ ମସ୍ତକନ୍ୟସ୍ତହସ୍ତା
ନବାଙ୍ଗୀ କୁରଙ୍ଗୀଦୃଗଙ୍ଗୀକରୋତୁ ।

ଅର୍ଥାତ୍ ହେ ରାଜା ! ମୁଁ ହାତୀଗୁଡ଼ିଏ ବା ଘୋଡ଼ା ଗୁଡ଼ିଏ ମାଗୁ ନାହିଁ । ରାଜକୋଷର ଧନରତ୍ନରେ ମଧ୍ୟ ମୋର ମନ ନାହିଁ । ମସ୍ତକରେ ହସ୍ତ ଦେଇ କୋଠା ଉପରେ ଠିଆ ହୋଇଥିବା ଏହି ନବୀନବୟସୀ କୁରଙ୍ଗନୟନା ବାଳା ମୋତେ ଅଙ୍ଗୀକାର କରୁ—ମୋର ଏତିକି ଭିକ୍ଷା ।

ଆଉଥରେ ଭୋଜରାଜା କାଳିଦାସଙ୍କର ବେଶ୍ୟାପ୍ରୀତି ଜାଣି ପାରି ତାଙ୍କୁ ରାଜସଭାରେ ଅପମାନିତ କରିବାର ଯୋଜନା କଲେ । ଉକ୍ତ ବେଶ୍ୟାକୁ ଧନରତ୍ନ ଦ୍ୱାରା ବଶୀଭୂତ କରି କାଳିଦାସଙ୍କୁ ଲଣ୍ଡିତମସ୍ତକ କରିବାକୁ ସେ ଆଦେଶ ଦେଲେ । ସେହିଦିନ ରାତିରେ ଉକ୍ତ ବେଶ୍ୟା କାଳିଦାସଙ୍କୁ ପ୍ରୀତିସମ୍ଭାଷଣପୂର୍ବକ ଲଣ୍ଡିତମସ୍ତକ କରାଇଲା ସତ, ମାତ୍ର ପରେ ଦୁଃଖ ପ୍ରକାଶ କରି ସମସ୍ତ ଘଟଣା ଜଣାଇଦେଲା । ସେଦିନ କାଳିଦାସ ବେଶ୍ୟା-ଗୃହରେ ଲୁଚି ରହି ଆଉ ରାଜସଭାକୁ ଗଲେ ନାହିଁ । କାଳିଦାସ ରାଜାଙ୍କର ଏ ଭଳି କପଟ ଆଚରଣରେ କ୍ଷୁବ୍ଧ ହୋଇ ଏହାର ପ୍ରତିଶୋଧ ଲାଗି ବଦ୍ଧପରିକର ହେଲେ ଓ ସେଦିନ ରାଜସଭାକୁ ନ ଯାଇ ଛଦ୍ମ ଜ୍ୟୋତିଷ ବେଶ ଧାରଣ କରି ରାଜାଙ୍କ ଅନ୍ତଃପୁରରେ ପହଞ୍ଚି ରାଣୀ ଭାନୁମତୀଙ୍କ କୋଷ୍ଠୀ ଗଣନା କରି ତାଙ୍କୁ କହିଲେ ଯେ, ତିନିଦିନ ମଧ୍ୟରେ ଭୋଜରାଜା ମରିଯିବେ । ଏହାର ପ୍ରତିକାର

ଏକମାତ୍ର ଉପାୟ । ଯଦି ରାଜା ଘୋଡ଼ା ସାଜନ୍ତି ଓ ରାଣୀ ଭାନୁମତୀ ତାଙ୍କ ଉପରେ ବସି ତାଙ୍କ ପଲଙ୍କର ଚାରିପାଖରେ ତିନିଥର ବୁଲି ଆସନ୍ତି ତା'ହେଲେ ତାଙ୍କର ଏ ଦୃଷ୍ଟି ଖଣ୍ଡନ ହେବ । ରାଣୀଙ୍କୁ ଏପରି ମିଥ୍ୟା କହି କାଳିଦାସ ଫେରିଗଲେ । ସେଦିନ ରାତିରେ ଭୋଜରାଜା ରାଣୀଙ୍କ ଅନ୍ତଃପୁରରେ ପହଞ୍ଚି ରାଣୀଙ୍କୁ ବିଷଣ୍ଣ ବଦନରେ ଦେଖି ତାଙ୍କୁ ତାହାର କାରଣ ପଚାରନ୍ତେ ରାଣୀ ଜ୍ୟୋତିଷଙ୍କର ସମସ୍ତ କଥା କହିଲେ । ରାଣୀଙ୍କ ଏକାନ୍ତ ଅନୁରୋଧକ୍ରମେ ଭୋଜରାଜା ଘୋଡ଼ା ସାଜିଲେ ଓ ରାଣୀ ତାଙ୍କ ଉପରେ ବସି ତାଙ୍କୁ ପଲଙ୍କର ଚାରିପାଖରେ ତିନିଥର ବୁଲାଇଲେ । ରାତି ପାହିଲା । ଲଣ୍ଡିତମସ୍ତକ କାଳିଦାସ ଭୋଜ-ରାଜାଙ୍କର ଦରବାରରେ ପହଞ୍ଚିବା ମାତ୍ରେ କୌତୁକପ୍ରିୟ ରାଜା ତାଙ୍କୁ ପ୍ରଶ୍ନ କଲେ—

"କିଂ କୁର୍ବନ୍ତି ନ କୁର୍ବନ୍ତି କାମିନୀବଶଗା ନରାଃ"
ଅର୍ଥାତ୍ ନାରୀବଶ ପୁରୁଷ କି କାର୍ଯ୍ୟ ନ କରେ ?

ଏହାର ଉତ୍ତରରେ କାଳିଦାସ କହିଲେ—"ଯତ୍ କାମିନ୍ୟାଃ ପ୍ରସାଦେନ ନୃପତିର୍ଘୋଟକାୟତେ" ଅର୍ଥାତ୍ ଯେଉଁ ନାରୀପ୍ରସାଦରୁ ରାଜା ଘୋଡ଼ା ପରି ଆଚରଣ କରନ୍ତି । ଏହା ଶୁଣି ରାଜା ବିଶେଷ ଲଜ୍ଜିତ ହେଲେ ଓ ଉଭୟେ ଉଭୟଙ୍କ ମର୍ଯ୍ୟାଦା ରକ୍ଷା ଲାଗି ଆଉ ଅଧିକ ଯୁକ୍ତିତର୍କରେ ମନ ବଳାଇଲେ ନାହିଁ ।

କାଶୀ ନଗରରେ ସେ ବିଦ୍ୟାରେ ପରାସ୍ତ ହୋଇଥିଲେ ବୋଲି ପ୍ରବାଦ ଅଛି । ଥରେ ଜଣେ ବୁଢ଼ା ନଈଁ ନଈଁ କାଶୀ-

ରାଜପଥରେ ଗଲାବେଳେ କାଳିଦାସ ତାଙ୍କ ପ୍ରତି ପରିହାସ କରି ପ୍ରଶ୍ନ କଲେ—

"ଅସତ୍ୟା କମନ୍ୱିଷ୍ୟସି ?

ଅର୍ଥାତ୍ ତୁମେ ଏଠାରେ କଅଣ ଖୋଜୁଛ ?

ସେହି ବୃଦ୍ଧା କାଳିଦାସଙ୍କର ଏ ପ୍ରଶ୍ନରେ କ୍ଷୁବ୍ଧ ହୋଇ ଉତ୍ତର ଦେଲେ—

"ଅନ୍ୱିଷ୍ୟାମି ଯୌବନଂ ମେ"

ଅର୍ଥାତ୍ ମୁଁ ମୋର ଯୌବନ ଖୋଜୁଛି । ଏ ଉତ୍ତରରେ କାଳିଦାସ ବିଶେଷ ଅପମାନିତ ହେଲେ ।

କାଶୀନଗରୀରେ ବାସ କଲାବେଳେ ଏକ ବେଶ୍ୟା ସହ କାଳିଦାସଙ୍କର ମିଳନ ହୋଇଥିଲା । ବେଶ୍ୟାର କୁଚଯୁଗଳକୁ ଲକ୍ଷ୍ୟ କରି କାଳିଦାସ ଚତୁରତାର ସହ ପ୍ରଶ୍ନ କଲେ—

"କଥଂ ତବ କୁଚଦ୍ୱନ୍ଦ୍ୱଂ ପତିତଂ ଭାତି ସୁନ୍ଦରି ! "

ଅର୍ଥାତ୍ ହେ ସୁନ୍ଦରୀ ! ତୁମର ଏ କୁଚଯୁଗଳ କିପରି ନଇଁ ପଡ଼ିଲା ?

ଏହାର ଉତ୍ତରରେ ବେଶ୍ୟା କାଳିଦାସଙ୍କୁ ଅପମାନ ଦେଇ କହିଲା—

"ପଶ୍ୟାଧଃ ଖନନାତ୍ ମୂଢ଼ !
ପତନ୍ତି ଗିରୟୋଽପି ଚ"

ଅର୍ଥାତ୍ ରେ ମୂର୍ଖ ! ତୁ କଣ ଦେଖି ନାହୁଁ ଯେ ନିମ୍ନଭାଗ ଖନନ ହେଲେ ପର୍ବତ ମଧ୍ୟ ଭୂମିଶାୟୀ ପଡ଼େ । କାଳିଦାସ ଏ ପ୍ରକାର ଉତ୍ତର ଶୁଣି ବିଶେଷ ଲଜ୍ଜିତ ହେଲେ ଓ କାଶୀ ନଗରୀରେ ପ୍ରତି ପଦେ ପଦେ ହାରି ମାନିଲେ ।

କଥିତ ଅଛି—କାଳିଦାସଙ୍କ ପ୍ରିୟତମା ବେଶ୍ୟା ଲକ୍ଷହୀରାର ରୂପ ପ୍ରଶଂସା ଶୁଣି ଭୋଜରାଜା ତା ସମ୍ବନ୍ଧ ପ୍ରଣୟ ରଚନା ଲାଗି ଥରେ ତାଙ୍କ ବାସସ୍ଥାନକୁ ଯାଇଥିଲେ । କାଳିଦାସ ସେତେବେଳେ ଲକ୍ଷହୀରାର ପୁରରେ ଥାଆନ୍ତି । ରାଜାଙ୍କର ଆଗମନ ଜାଣିପାରି କାଳିଦାସ ସମ୍ଭ୍ରମ ଚିତ୍ତରେ ସେ କେଳିଗୃହରେ ଏକ କୋଣରେ ଲୁଚି ରହି ରାଜାଙ୍କର ହାବଭାବ ଲକ୍ଷ୍ୟ କରୁଥାନ୍ତି । ଏହି ସମୟରେ ଭୋଜରାଜା ସୁନ୍ଦରୀ ଲକ୍ଷହୀରାର କୁଚଯୁଗଳରେ କରମର୍ଦ୍ଦନ କରି ଏକାନ୍ତ ଭାବାବେଶ ହୋଇ କହିଲେ—

"କାନ୍ତେ ! ତବ କୁଚଦ୍ୱନ୍ଦ୍ୱୌ ନୂନଂ ହି ଚକ୍ରବର୍ତ୍ତିନୌ"

ଅର୍ଥାତ୍ ହେ ସୁନ୍ଦରି ! ତୁମର କୁଚଯୁଗଳ ନିଶ୍ଚୟ ଦୁଇଟି ଚକ୍ରବର୍ତ୍ତୀ ଅଟନ୍ତି । ତାହା ଶୁଣି କାଳିଦାସ ତୁନି ରହି ନପାରି ଚପଳତାବଶତଃ କେଳିପୁରର ସେହି ନିଭୃତ କୋଣରୁ ପାଦପୂରଣ କଲେ—

"ଆସମୁଦ୍ରକରଗ୍ରାହୀ ଭବାନ୍ ଯତ୍ର କରପ୍ରଦଃ"

ଅର୍ଥାତ୍ — ଆପଣ ସାଗର ପର୍ଯ୍ୟନ୍ତ ଭୂଖଣ୍ଡର କର (ଖଜଣା) ଆଦାୟ କରନ୍ତି । ଆପଣ ଯେତେବେଳେ ଏ କୁଚ-ଯୁଗଳକୁ କର (ହାତ) ଦେଉଛନ୍ତି ସେତେବେଳେ ଏ କୁଚ-ଯୁଗଳ ନିଶ୍ଚୟ ରାଜଚକ୍ରବର୍ତ୍ତୀ । ରାଜା ଏହା ଶୁଣି ଏକାନ୍ତ ଲଜ୍ଜିତ ଓ ବିସ୍ମିତ ହେଲେ ।

କଥିତ ଅଛି, ଏକଦା ରାଣୀ ଭାନୁମତୀ ତାଙ୍କର ସହଚରୀ ସହିତ କୌଣସି ଗୋପନ କଥାରେ ରତ ଥିଲାବେଳେ ଭୋଜରାଜ ଅନ୍ତଃପୁରକୁ ପ୍ରବେଶ କଲେ ଓ ସେ ଦୁହିଁଙ୍କର

ଗୋପନ ମନ୍ତ୍ରଣାକୁ କାନ ପାରି ଶୁଣିଲେ । କିଛି ସମୟ ପରେ ଭାନୁମତୀଙ୍କର ଦୃଷ୍ଟି ରାଜାଙ୍କ ଉପରେ ପଡ଼ିବାରୁ ସେ କ୍ରୋଧାନ୍ୱିତା ହୋଇ ତାଙ୍କୁ ମୂର୍ଖ ବୋଲି ଗାଳିଦେଲେ । ଏଥିରେ ଭୋଜରାଜ ଏକାବେଳକେ ବିଚଳିତ ହୋଇ, ସେଦିନ ଭୋଜନ ନ କରି, ରାଜସଭାରେ ମନ୍ତ୍ରୀ, ପଣ୍ଡିତ ତଥା ଅନ୍ୟାନ୍ୟ ସଭାସଦଗଣଙ୍କୁ ମୂର୍ଖ ବୋଲି ସମ୍ବୋଧନ କଲେ । ଏହି ସମୟରେ କାଳିଦାସ ରାଜସଭାରେ ପହଞ୍ଚିଲେ । ତାଙ୍କୁ ଲକ୍ଷ୍ୟ କରି ଭୋଜରାଜ ମୂର୍ଖ ବୋଲି କହିବାରୁ କାଳିଦାସ ସ୍ତମ୍ଭିତ ହୋଇ କିଛିକ୍ଷଣ ଚିନ୍ତାକଲେ । ସେ ତ୍ରିକାଳଜ୍ଞ ହୋଇ ଥିବାରୁ ଅନ୍ତଃପୁରରେ ଘଟିଥିବା ଭାନୁମତୀଙ୍କର ରାଜାଙ୍କୁ ଅପମାନ ଦେବା କଥା ଜାଣି ପାରି ସେହି ପ୍ରସଙ୍ଗରେ ଶ୍ଳୋକଟିଏ ଆବୃତ୍ତି କଲେ :—

"ଖାଦନ୍ନ ଗଚ୍ଛାମି ହସନ୍ନ ଜଳ୍ପେ<br>ଗତଂ ନ ଶୋଚାମି କୃତଂ ନ ମନ୍ୟେ ।<br>ଦ୍ୱୟୋସ୍ତୃତୀୟୋ ନ ଭବାମି ରାଜନ୍ !<br>କେନାପି ମୂର୍ଖୋ ବଦ କାରଣେନ ॥"

ଅର୍ଥାତ୍— ମୁଁ ଖାଇ ଖାଇ ବାଟ ଚାଲେ ନାହିଁ, ହସି ହସି କଥା କହେ ନାହିଁ, ଗତ କଥାକୁ ଭାବେ ନାହିଁ, ଯାହା କରିଥାଏ ତାକୁ ପୁଣି ମନେ କରେ ନାହିଁ, ଦୁଇଜଣ ଗୋପନ କଥା ହେଉଥିଲା ବେଳେ ଲୁଚି ରହି ତାଙ୍କ କଥା ଶୁଣେ ନାହିଁ; ତେଣୁ କୁହନ୍ତୁ ମୁଁ କପରି ମୂର୍ଖ ହେଲି ।

ଏହା ଶୁଣିଲା ମାତ୍ରେ ରାଜା ଚିନ୍ତାକଲେ ଯେ ସେ ଭାନୁମତୀ ଓ ତାଙ୍କ ସହଚରୀଙ୍କର ଗୋପନ କଥା ଶୁଣୁଥିବାରୁ ଭାନୁମତୀ

ତାଙ୍କୁ ଯଥାର୍ଥରେ ମୂର୍ଖ ବୋଲି କହୁଛନ୍ତି । ତେଣୁ ସେ ନିଜର ଦୋଷ ବୁଝି ପାରି ଚୁପ୍ ରହିଲେ ଓ ଆଉ କାହାକୁ ମୂର୍ଖ ବୋଲି ଗାଳି ଦେଲେ ନାହିଁ ।

ଜନଶ୍ରୁତି କହେ, ଥରେ ଭୋଜରାଜ କାଳିଦାସଙ୍କୁ ସେଦିନ ବର୍ଷା ହେବ କି ନାହିଁ ପ୍ରଶ୍ନ କଲେ । କାରଣ ବର୍ଷା ହେଲେ ସେ ମୃଗୟାକୁ ଯାଇ ପାରିବେ ନାହିଁ । କାଳିଦାସ କିଛିକ୍ଷଣ ଚିନ୍ତା କରି କହିଲେ ।

"ଅଶ୍ୱପ୍ଲୁତଂ ବାସବଗର୍ଜିତଞ୍ଚ
ଅବର୍ଷଣଂ ଚାପ୍ୟତିବର୍ଷଣଂ ଚ
ସ୍ତ୍ରୀଣାଂ ଚରିତ୍ରଂ ପୁରୁଷସ୍ୟ ଭାଗ୍ୟମ୍ ।
ଦେବୋ ନ ଜାନାତି କୁତୋ ମନୁଷ୍ୟଃ ।"

ଅର୍ଥାତ୍— ଅଶ୍ୱର ଗତି, ଇନ୍ଦ୍ରର ଗର୍ଜନ, ସ୍ତ୍ରୀମାନଙ୍କ ଚରିତ୍ର, ପୁରୁଷର ଭାଗ୍ୟ, ଅନାବୃଷ୍ଟି ଓ ଅତିବୃଷ୍ଟି—ଏହାକୁ ଦେବତା ମଧ୍ୟ ଜାଣନ୍ତି ନାହିଁ, ମନୁଷ୍ୟ ବା କୁଆଡ଼ୁ ଜାଣିବ ?

ପ୍ରବାଦ ଅଛି, ଭୋଜରାଜଙ୍କର ଦରବାରରେ ଗୋଟିଏ ଶ୍ରୁତିଶକ୍ତିବିଶିଷ୍ଟ ପଣ୍ଡିତ ଥାଆନ୍ତି । ଭୋଜରାଜ ଥରେ ଘୋଷଣା କଲେ ଯେ ଯଦି କୌଣସି ପଣ୍ଡିତ ନୂତନ ଶ୍ଳୋକ ରଚନା କରି ତାଙ୍କୁ ଶୁଣାଇବେ, ତେବେ ସେ ତାଙ୍କୁ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ପୁରସ୍କାର ଦେବେ । କିନ୍ତୁ କୌଣସି ପଣ୍ଡିତ ସେ ପୁରସ୍କାର ପାଇ ପାରିଲେ ନାହିଁ । କାରଣ ପଣ୍ଡିତମାନେ ଯେ କୌଣସି ନୂତନ ଶ୍ଳୋକ ପାଠ କଲେହେଁ ଉକ୍ତ ଶ୍ରୁତିଧର ରାଜସଭାପଣ୍ଡିତ ତାହାକୁ ହଠାତ୍

ମନେରଖି ପୁଣି ରାଜସଭାରେ ଆବୃତ୍ତି କରି ସେ ଶ୍ଳୋକକୁ ପୁରାତନ ବୋଲି ପ୍ରମାଣ କରନ୍ତି । କାଳିଦାସ ପ୍ରତ୍ୟୁତ୍ପନ୍ନମତି ହୋଇଥିବାରୁ ସେଦିନ ଭୋଜରାଜଙ୍କ ସମକ୍ଷରେ ପାଠକଲେ—

"ସ୍ୱସ୍ତି ଶ୍ରୀଭୋଜରାଜସ୍ତ୍ରିଭୁବନବିଜୟୀ ଧାର୍ମିକଃ ସତ୍ୟବାଦୀ
ପିତ୍ରା ତେ ମେ ଗୃହୀତା ନବନବତିଯୁତା ରତ୍ନକୋଟିର୍ମଦୀୟା ।
ତତ୍ତ୍ୱଂ ମେ ଦେହି ରାଜନ୍ ! ସକଳବୁଧଗଣୈର୍ଜ୍ଞାୟତେ ତଥ୍ୟମେତତ୍
ନୋ ବା ଜାନନ୍ତି କେଚିନ୍ନମ ବଦନକୃତଂ ଲକ୍ଷମେକଂ ଦଦସ୍ୱ ।"

ଅର୍ଥାତ୍—"ତ୍ରିପୁରବିଜୟୀ, ସତ୍ୟବାଦୀ ଓ ଧର୍ମଶୀଳ ଭୋଜରାଜାଙ୍କର ମଙ୍ଗଳ ହେଉ । ଆପଣଙ୍କର ପିତା ମୋ ଠାରୁ ଅନେଶତ କୋଟି ରତ୍ନମୁଦ୍ରା କରଜ ନେଇଥିଲେ । ଏ କଥାକୁ ଆପଣଙ୍କର ସଭାପଣ୍ଡିତମାନେ ଜାଣନ୍ତି । ଯଦି ସେମାନେ ଏହା ଜାଣି ନ ଥାଆନ୍ତି ତେବେ ମୋର ଏହାକୁ ନୂତନ ଶ୍ଳୋକ ମନେକରି ଆପଣ ନିଜ ଘୋଷଣା ଅନୁସାରେ ମୋତେ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ଦିଅନ୍ତୁ ।

ତାଙ୍କର ଏ ଶ୍ଳୋକ ଶୁଣି ରାଜା ଏକାନ୍ତ ପ୍ରୀତ ହୋଇ ତାଙ୍କୁ ଲକ୍ଷେ ସ୍ୱର୍ଣ୍ଣମୁଦ୍ରା ଦାନକଲେ ।

ଥରେ ଜଣେ ପଣ୍ଡିତ ଭୋଜରାଜାଙ୍କ ସଭାକୁ ଆସି ସମୁଦ୍ରର ୭ଟି ନାମ ଅମ୍ଭୋଧି, ଜଳଧି, ପୟୋଧି, ଉଦଧି, ବାରାଂନିଧି ଓ ବାରିଧି ଶବ୍ଦକୁ ପାଦ ପୂରଣ କରି ଏକ ଶ୍ଳୋକ ରଚନା କରିବାକୁ ତତ୍ରତ୍ୟ ପଣ୍ଡିତମାନଙ୍କୁ ଅନୁରୋଧ କଲେ । କେବଳ କାଳିଦାସ ତାର ଉତ୍ତରରେ ଶ୍ଳୋକ ପାଠକଲେ—

"ଅମ୍ବା କୁପ୍ୟତି ତାତ ! ମୂର୍ଦ୍ଧ୍ନି ବିଧୃତା ଗଙ୍ଗେୟମୁତ୍ସୃଜ୍ୟତାମ୍
ବିଦ୍ୱନ୍ ଷଣ୍ମୁଖ ! ସାନ୍ତତଂ ମୟି ରତା ତସ୍ୟା ଗତିଃ କା ବଦ ।

କୋପାଟେ'ପବଶାଦ ବଡ୍ଢବଦନଃ ପ୍ରତ୍ୟୁତ୍ତରଂ ଦତ୍ତବାନ
ଅମ୍ଭୋଧିର୍ଜଳଧିଃ ପୟୋଧିରୁଦଧିର୍ବାରାଂନଧିର୍ବାରଧିଃ ।

ଅର୍ଥାତ୍—ଦିନେ କାର୍ତ୍ତିକ ପିତା ମହାଦେବଙ୍କୁ କହିଲେ "ହେ ପିତା ! ଆପଣଙ୍କର ମସ୍ତକରେ ଗଙ୍ଗାଙ୍କୁ ଦେଖି ମା ପାର୍ବତୀ ସବୁବେଳେ କ୍ରୁଦ୍ଧା ହେଉଛନ୍ତି । ଏଣୁ ଆପଣ ଗଙ୍ଗାଙ୍କୁ ପରିତ୍ୟାଗ କରନ୍ତୁ ?" ମହାଦେବ କାର୍ତ୍ତିକଙ୍କର ଏ ପ୍ରଶ୍ନର ଉତ୍ତରରେ କହିଲେ, "ହେ ଜ୍ଞାନୀ କାର୍ତ୍ତିକ ! ସେ ତ ବହୁଦିନରୁ ମୋ ମସ୍ତକରେ ଆଶ୍ରୟ ନେଇଛି । ବର୍ତ୍ତମାନ ତାକୁ ପରିତ୍ୟାଗ କଲେ ସେ କେଉଁଆଡ଼କୁ ଯିବ ?" ତାହା ଶୁଣି କାର୍ତ୍ତିକ ରାଗିଯାଇ ତାଙ୍କର ଛଅଟିଯାକ ମୁହଁରେ କହିଉଠିଲେ, "ଅମ୍ଭୋଧି, ଜଳଧି, ପୟୋଧି, ଉଦଧି, ବାରାନଧି ଓ ବାରଧି" ଅର୍ଥାତ୍ ଗଙ୍ଗା ସମୁଦ୍ରକୁ ଯାଉ ।

ବନମାଳୀଙ୍କ ରାଜସଭାରେ ଥରେ ପଣ୍ଡିତମାନେ ସେମାନଙ୍କର ଅନ୍ତିମ ଅଭିଳାଷ ବ୍ୟକ୍ତ କରିବାର ସୁଯୋଗ ପାଇଥିଲେ । ତନ୍ମଧ୍ୟରୁ ଜନୈକ କୃଷ୍ଣଭକ୍ତ ଉଚ୍ଚାରଣ କଲେ—

"କଦା ବୃନ୍ଦାରଣ୍ୟେ ବିମଳଯମୁନାତୀରପୁଳିନେ
ଚରନ୍ତଂ ଗୋବିନ୍ଦଂ ହଳଧରସୁଦାମାଦିସହିତମ୍
ଅୟେ କୃଷ୍ଣ ! ସ୍ୱାମିନ୍ ! ମଧୁରମୁରଳୀବାଦନ ବିଭୋ !
ପ୍ରସୀଦେତ୍ୟାକ୍ରୋଶନ୍ ନିମିଷମିବ ନେଷ୍ୟାମି ଦିବସାନ୍ ।

ଅର୍ଥାତ୍—କେବେ ବୃନ୍ଦାବନରେ ବିମଳ ଯମୁନାପୁଳିନରେ ବସି ବଳରାମ ସୁଦାମାଆଦିଙ୍କ ଗହଣରେ ଭ୍ରମଣ କରୁଥିବା କୃଷ୍ଣଙ୍କୁ ଦେଖି ହେ କୃଷ୍ଣ ! ହେ ସ୍ୱାମି ! ହେ ମଧୁରମୁରଳୀବାଦନ ପ୍ରଭୋ !

ବୋଲି ଉଚ୍ଚାରଣ କରି ମୋର ଦିନଗୁଡ଼ିକୁ ନିମିଷକ ପରି କଟାଇବି !

ଅନ୍ୟ ଏକ ପଣ୍ଡିତ ରାମଭକ୍ତ ହୋଇଥିବାରୁ ସେ ଆନନ୍ଦରେ ତାଙ୍କର ଅଭିଳାଷ ବ୍ୟକ୍ତ କରି ଉଚ୍ଚାରଣ କଲେ—

କଦା ବା ସାକେତେ ବିମଳସରଯୂତୀରପୁଲିନେ
ଚରନ୍ତଂ ଶ୍ରୀରାମଂ ଜନକତନୟାଲକ୍ଷ୍ମଣଯୁତମ୍ ।
ଅୟେ ରାମ ! ସ୍ୱାମିନ୍ ! ଜନକତନୟାବଲ୍ଲଭ ବିଭୋ !
ପ୍ରସୀଦେତ୍ୟାକ୍ରୋଶନ୍ ନିମିଷମିବ ନେଷ୍ୟାମି ଦିବସାନ୍ ।

ଅର୍ଥାତ୍—କେବେ ମୁଁ ଅଯୋଧ୍ୟାର ନିର୍ମଳ ସରଯୂନଦୀ କୂଳରେ ସୀତା ଓ ଲକ୍ଷ୍ମଣଙ୍କ ଗହଣରେ ବୁଲୁଥିବା ଶ୍ରୀରାମଙ୍କୁ ଦେଖି, ହେ ରାମ ! ହେ ସ୍ୱାମି ! ହେ ସୀତାପ୍ରିୟ ପ୍ରଭୋ ! ବୋଲି ଉଚ୍ଚାରଣ କରି ମୋର ଦିନଗୁଡ଼ିକୁ ନିମିଷକ ପରି କଟାଇବି !

ତା'ପରେ ଅନ୍ୟ ଏକ ପଣ୍ଡିତ ଶିବଭକ୍ତ ହୋଇଥିବାରୁ ସେ ତାଙ୍କର ଅନ୍ତିମ ଅଭିଳାଷ ଜଣାଇ ଶ୍ଳୋକ ରଚନା କଲେ—

"କଦା ବାରାଣସ୍ୟାମମରତଟିନୀରୋଧସି ବସନ୍
ବସାନଃ କୌପୀନଂ ଶିରସି ନିଦଧାନୋଽଞ୍ଜଳିପୁଟମ୍ ।
ଅୟେ ଗୌରୀନାଥ ! ତ୍ରିପୁରହର ! ଶମ୍ଭୋ ! ତ୍ରିନୟନ !
ପ୍ରସୀଦେତ୍ୟାକ୍ରୋଶନ୍ ନିମିଷମିବ ନେଷ୍ୟାମି ଦିବସାନ୍ ।"

ଅର୍ଥାତ୍—ମୁଁ କେବେ ବାରାଣସୀ ନଗରୀରେ ସୁରନଦୀ ଗଙ୍ଗାକୂଳରେ ବାସ କରି କୌପୀନ ପରିଧାନ ଓ ମସ୍ତକରେ ଅଞ୍ଜଳି ଧାରଣପୂର୍ବକ ହେ ଗୌରୀନାଥ ! ହେ ତ୍ରିପୁର ହର ! ହେ ଶମ୍ଭୋ ! ହେ ତ୍ରିନୟନ ! ବୋଲି ଉଚ୍ଚାରଣ କରି ମୋର ଦିନଗୁଡ଼ିକୁ ନିମିଷକ ପରି କଟାଇବି !

ଶେଷରେ ସୁଶ୍ରୀ ନାଗଭକ୍ତ କାଳିଦାସ ତାଙ୍କର ଅନ୍ତିମ ଅଭିଳାଷ ଜଣାଇ ଶ୍ଳୋକ ପାଠକଲେ— ·

"କଦା କାନ୍ତାଗାରେ ପରିମଳମିଳଦ୍‌ପୁଷ୍ପଶୟନେ
ଶୟାନଃ କାନ୍ତାୟାଃ କୁଚକଳଶଯୁଗ୍ମଂ ହୃଦି ବହନ୍
ଅୟେ କାନ୍ତେ ! ମୁଗ୍‌ଧେ ! କୁଟିଳନୟନେ ! ଚନ୍ଦ୍ରବଦନେ !
ପ୍ରସୀଦେତ୍ୟାକ୍ରୋଶନ୍ ନିମିଷମିବ ନେଷ୍ୟାମି ରଜନୀମ୍ ।

ଅର୍ଥାତ୍—ମୁଁ କେବେ ପ୍ରିୟାର ଅନ୍ତଃପୁରରେ ଋନ୍ଧ ସୁବାସିତ ପୁଷ୍ପଶଯ୍ୟାରେ ଶୟନ କରି ପ୍ରିୟାର କୁଚକଳଶ-ଦ୍ୱୟକୁ ମୋର ବକ୍ଷରେ ଜାବୋଡ଼ି ଧରି ହେ କାନ୍ତେ ! ହେ ମୁଗ୍‌ଧେ, ହେ କୁଟିଳନୟନେ ! ହେ ଚନ୍ଦ୍ରବଦନେ ! ଏହିପରି ପ୍ରିୟାକୁ ସମ୍ଭାଷଣ କରି ରଜନୀକୁ ମୁଁ ନିମିଷକ ପରି କଟାଇବି !

ରଚନା—କାଳିଦାସ ମହାକାବ୍ୟ ରଘୁବଂଶ, କୁମାରସମ୍ଭବ, ଖଣ୍ଡକାବ୍ୟ ମେଘଦୂତ, ଋତୁସଂହାର, ନଳୋଦୟ, ପୁଷ୍ପବାଣ-ବିଳାସ, ରମ୍ୟରଚନା ଶୃଙ୍ଗାର ତିଳକ ଓ ଶୃଙ୍ଗାର ରସାଷ୍ଟକ, ନାଟକ ଅଭିଜ୍ଞାନ ଶକୁନ୍ତଳମ୍, ବିକ୍ରମୋର୍ବଶୀୟମ୍ ମାଳବିକା-ଗ୍ନିମିତ୍ରମ୍, ଗଳ୍ପ ଦ୍ୱାତ୍ରିଂଶତ୍‌ପୁତ୍ତଳିକା ଓ ଛନ୍ଦଃଶାସ୍ତ୍ର ଶ୍ରୁତବୋଧ ପ୍ରଣୟନ କରି ସଂସ୍କୃତ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ତାଙ୍କର ରଚନାରେ ଯମକ, ଅଳଙ୍କାର ପ୍ରଭୃତିର ବହୁଳ ପ୍ରୟୋଗ ଦେଖା-ଯାଏ । ତାଙ୍କର ରସାଳ ରଚନା ଭାବଦ୍ୟୋତକ, ମର୍ମସ୍ପର୍ଶୀ ଓ ପ୍ରେମରସରସାଣିତ ହୋଇଥିବାରୁ ପାଠକମଣ୍ଡଳୀ ତାଙ୍କ ରଚନା

ପାଠ କରି ଆତ୍ମହରା ହୁଏ । ଏଣୁ କାଳିଦାସ କବିତାପ୍ରେମୀ କୌଣସି ଏକ ପଣ୍ଡିତ ତାଙ୍କର ଅନ୍ତିମ ଅଭିଳାଷ ଜଣାଇଛନ୍ତି—

"କାଳିଦାସକବିତା ନବଂ ବୟଃ
ମାହିଷଂ ଦଧି ସଶର୍କରଂ ପୟଃ
ଏଣମାଂସମବଳା ସୁକୋମଳା
ସମ୍ଭବନ୍ତୁ ମମ ଜନ୍ମଜନ୍ମନି ।"

ଅର୍ଥାତ୍—କାଳିଦାସଙ୍କର କବିତା, ନବୀନ ବୟସ, ମହିଷୀ ଦଧି, ନବାତମିଶା କ୍ଷୀର, ମୃଗମାଂସ ଓ କୋମଳାଙ୍ଗୀ ରମଣୀ ମୋର ଜନ୍ମଜନ୍ମାନ୍ତରରେ ମୋତେ ମିଳୁ ।

---

# ଋତୁ ସଂହାର

## ପ୍ରଥମ ସର୍ଗ

### ଗ୍ରୀଷ୍ମ ବର୍ଣ୍ଣନ

( ରାଗ—ବଙ୍ଗଳାଶ୍ରୀ )

ଆଗତ ମଧ୍ୟରେ ଦାରୁଣ ନିଦାଘ
ପ୍ରଚଣ୍ଡ ମିହିର ଅଛି,
ତାପକ୍ଳାନ୍ତ ଜୀବ ଅବିରତ ସ୍ନାନେ
ଜଳ ଲଭେ ଈପ୍ସିତଛି ।
ଦେଖ ରେ ସଜନି ! ଦିବା ଅବଶେଷ
ରମଣୀୟ ଦିଶେ ଏବେ,
ମନ୍ଦୀଭୂତ କ୍ରମେ ମନମଥ ତାପ
ଝଞ୍ଜା ବାତ ବହେ ଯେବେ । ୧ ।

ତାପ ଶାନ୍ତି ଆଶେ ବିବିଧ ଉପାୟେ
ସରବେ ଅଧୀର ପ୍ରାଣ,
କୁମୁଦ-ବାନ୍ଧବ ଜ୍ୟୋତ୍ସ୍ନାରେ ଅବା
ଜଳଯନ୍ତ୍ରପୁରେ ଜାଣ ।
ଅବା ମଣିମୟ ପ୍ରାଚୀର ମଧ୍ୟରେ
ତାପ ଦୂର ଲଗି ଆଶ,
ସୁବାସ ଚନ୍ଦନେ ମଣ୍ଡି କଳେବର
ପିନ୍ଧ ଗୃହୁ ଝୀନବାସ । ୨ ।

ସୁବାସିତ ଜଳେ ପୂରିତ ପ୍ରାସାଦ
କାମିଜନ ଚର୍ଣ୍ଣେଁ ବସି,
ଉନ୍ମତ୍ତ ଚରଣେ ପ୍ରେୟସୀ-ଅଧର-
ମଧୁ ପାନ କରେ ହସି ।
ଅବା ତନ୍ତ୍ରୀ ଯୋଗେ କାମ ଉଦ୍ଦୀପନ
ମଧୁର ସଙ୍ଗୀତ ଗାଏ,
ନିଦାଘ ଉତ୍ତାପ ଉପଶମ ଚିନ୍ତା
ସବୁର ମାନସେ ଥାଏ । ୩ ।

ପ୍ରଣୟୀ-ହୃଦୟ- ତାପ ବିନାଶନେ
ବିଳାସିନୀ ନାରୀ ଆଜ,
ସୂକ୍ଷ୍ମବାସେ ମଣ୍ଡି ନିତମ୍ବ ଆବର
ଚନ୍ଦନେ ଉରଜ ସାଜ ।
ପୀନପୟୋଧର ମଧ୍ୟଭାଗେ ହାର
ଢଣଇ କେଡ଼େ ମଞ୍ଜୁଳ,
ସୁଗନ୍ଧ ତଇଳେ କେଶପାଶ ମଣ୍ଡି
ଶୋଭାବଣି କରେ ଠୂଳ । ୪ ।

ଲାକ୍ଷାରସରଗେ ଲୋହିତ ବରନ
ନିତମ୍ବିନୀ ପଦ ଆହା,
ନୂପୁର-ଶିଞ୍ଜନେ ମୁଖରିତ ହୋଇ
ଶ୍ରୁତି ସୁମଧୁର ତାହା ।
ପ୍ରତେ ହୁଏ ଅବା ଅନୁକରଣ ସେ
କରଇ ମଞ୍ଜୁଳସ୍ୱନ,
ମାନବ ପରାଣେ କାମପିପାସାକୁ
କରଏ ସେ ଜାଗରଣ । ୫ ।

ସୁଘନ-ଚନ୍ଦନ- ଲେପିତ ଉରଜେ
ହିମ-ଶୁଭ୍ର ହାରଲତା,
ନିତମ୍ବ ପ୍ରଦେଶେ କନକ ମେଖଳା
ମଣ୍ଡନର ମାଦକତା ।
ଯେ ଯେଡ଼େ ପରୁଷ ହେଲେହେଁ ଏକାଳେ
ଏମନ୍ତ ପୁରୁଷ କାହିଁ !
ପ୍ରିୟତମା ଅଙ୍ଗ ସଜାଇବା ଲାଗି
ଚଞ୍ଚଳ ହୋଇବ ନାହିଁ । ୬ ।

ଆତପ-ତାପରେ ପୀନପୟୋଧର
ଚେଜଣ ଦୁଃଖ-ହାର,
ଝୀନବାସେ ମଣ୍ଡି ଉରଜ ଯୁଗଳ
ଶାନ୍ତ ଲଭେ ବାରମ୍ବାର ।
ଭୁଜମୂଳ ଆଦି ଅଙ୍ଗ ସନ୍ଧିମାନ
ରମଣୀ ବରର ଯାହା,
ଦିବସ ଯାମିନୀ ସ୍ୱେଦବିନ୍ଦୁ ଯୋଗେ
ସିକ୍ତ ହୋଇଥାଏ ତାହା । ୭ ।

ପ୍ରଗାଢ଼ ଶୟନେ ଶାୟିତ ପ୍ରେମିକେ
ଜଗାଏ ରତିନପୁଣା,
ଚନ୍ଦନ-ଉଦକେ ସିକ୍ତ ତା ବ୍ୟଜନ-
ବାତେ ନିଦ୍ରା କରେ ଊଣା ।
ବିଳାସିନୀ ନାରୀ ଉରଜ ମଣ୍ଡଳୁଁ
ହାର ପରିହାର କରି,
ବୀଣାସ୍ୱନ ସଙ୍ଗେ ସଙ୍ଗୀତ ଉଚ୍ଚାରି
ଜଗାଏ ଶଙ୍କର-ଅରି । ୮ ।

ସୁଧାଧବଳିତ ପ୍ରାସାଦେ ନିଶିରେ
ନିଦ୍ରାଗତା ନାରୀ ମୁଖ-
ସୁଷମା ବିଲୋକି ନିଶାପତି ମନେ
ଲଭିଲେକି ଗୁରୁ ଦୁଃଖ ।
ଲଜ୍ଜା ଅନୁଭବ ନିଜର ପ୍ରାଧାନ୍ୟ
ବିଲୋପ ଆଶଙ୍କା ଲଭି,
ଅତୀବ ପାଣ୍ଡୁର ଦିଶେ ନିଶାଶେଷେ
ଅଙ୍ଗ ତାହା ଅନୁଭବ । ୯ ।

ଗ୍ରୀଷ୍ମତାପ ଅତି ଅସହ୍ୟ ହୁଅଇ
ଦିବା ମଧ୍ୟଭାଗେ ଜାଣ,
ମଣ୍ଡଳ ଆକାରେ ଆକାଶେ ଉଡ଼ନ୍ତି
ଦେଖ ଏବେ ଧୂଳିମାନ ।
ଉଷ୍ଣ ସମୀରଣ ପ୍ରବାହେ ଧରଣୀ
ଏ କାଳେ ତାପିତ ଅତି,
ବିରହବିଧୁର କାମୁକ ପରାଣ
ଶଙ୍କିତ ଦେଖି ଏ ଗତି । ୧୦ ।

ଏ କାଳେ ପ୍ରଚଣ୍ଡ ତାପେ ତୃଷାତୁର
ହୋଇ ମୃଗ ଧାବମାନ,
ଦଳିତ ଅଞ୍ଜନ ସମ ଶ୍ୟାମମେଘ
ପ୍ରଚ୍ଛାନ୍ତ ଆକାଶ ଜାଣ ।
ପୁଲକିତ ପ୍ରାଣେ ଧାଏଁ ଜଳ ଆଶେ
ମଣି ତାରେ ମେଘମାଳ
ଉତ୍ତଶୀଳ ଯେଣୁ ତା ପଦଯୁଗଳ
ଅସ୍ଥିର ଭାବ ତାହାର ।୧୧।

ସ୍ୱଦେଶ-ଆଗତ ପୂ ରୁଷ ପ୍ରଦୋଷେ
ନଭେ ଦେଖି କଳାକର,
ପ୍ରିୟାସଙ୍ଗ ଇଚ୍ଛି ଅଧୀର ପରାଣେ
ହୁଏ କାମେ ଜରଜର ।
ନବଯଉବନା କୁଟିଳ କଟାକ୍ଷେ
ଘାରଇ ପୁରୁଷ ମନ,
ଅଧର ପଲ୍ଲବେ ମଧୁ ହାସ ରଚି
କରେ କାମ ଉଦ୍ଦୀପନ ।୧୨।

ନିଦାଘ ତାପିତେ ତପ୍ତ ଧୂଳିକଣା
ଦଗଧ ଚର୍ମ୍ମରେ ଅଶ୍ବ,
କୁଟିଳ ଗତି ତା' ପରିହାର କରି
ନୀରବେ ନିଶ୍ଚଳେ ରନ୍ଧ୍ର ।
ଆନ ଉପାୟ ସେ ନ ପାଇ ସହସା
ଘନ ଶ୍ୱାସମାନ ଟେକ,
କେକୀପୁଚ୍ଛ ତଳେ ଶୟନ କରଇ
ଶୀତଳ ସେ ଛାୟା ହେଜ । ୧୩ ।

ତୃଷାତୁର ସିଂହ ଗ୍ରୀଷ୍ମ ତାପରେ
ଆପଣା ବିକ୍ରମ ଭୁଲେ,
ଘନ ଘନ ଶ୍ୱାସେ କମ୍ପେ ତା ମସ୍ତକ
ରସନା ଥରେ ଆକୁଳେ ।
ଅଦୂରେ ତାହାର ଗଜ ଥିଲେ ସୁଦ୍ଧା
ନ କରଇ ଆକ୍ରମଣ,
ଆନନ୍ଦେ ଶୟନ କରଇ ପାଶୋରି
ଗଜକୁମ୍ଭ-ବିଦାରଣ । ୧୪ ।

ପ୍ରଚଣ୍ଡ କରଣେ        ଗଜକୁଳ ଦେଖ
        ଅତୀବ ତାପିତ ଏବେ,
ଶୁଷ୍କକଣ୍ଠେ ସର୍ବେ        କାତର ଫସ୍ୱଣ·
        ଜଳ ଲୋଡ଼ୁଥାନ୍ତି ଯେବେ ।
ସଲିଳ ଆଶାରେ        ଚିନ୍ତିତ ଫରଣେ
        ହୁଅନ୍ତି ସଦା ଅଥୟ,
ମୃଗରାଜ ଦେଖି        ଅଦୂରେ ତଥାପି
        ଫରଣେ ନ ଜାଗେ ଭୟ । ୧୫ ।

ଘୃତାହୁତି ସମ        ଅନଳ ତାପରେ·
        ମୟୂର ଅତୀବ କ୍ଳାନ୍ତ,
ଚେତନା ହତ ସେ        ପରତେ ହୁଅଇ
        ଅଶ୍ୱ ଆକ୍ରମଣେ ଶାନ୍ତ ।
ପୁଚ୍ଛତଳେ ତାର        ଶାୟିତ ଭୁଜଗେ·
        କବଳ ନ କରେ ହେଲେ,
ଗ୍ରୀଷ୍ମ ତାପିତେ        ଆପଣା ଫସ୍ୱଣେ·
        ସନ୍ତାପିତ ଯେତେବେଳେ । ୧୬ ।

ବର୍ଷା ଏକାଳେ ଦିନକର ତାପେ
ତାପିତ ପବନେ ଯାଇ,
ମୁଖାଗ୍ରେ ବିଦାରି ସରୋବର ବକ୍ଷ
ମୁଥାମୂଳ ଉପୁଡ଼ାଇ ।
ପ୍ରଖର ମିହିର କିରଣ ନ ସହି
ଭୂ-ଗରଭେ ଲୀନ ଆଣେ,
ଆଠରେ କି ଅବା ଏମନ୍ତ ବେଶର
ଅତ୍ୟଧିକ ତାପଜାସେ । ୧୭ ।

ଅଂଶୁମାଳୀ ତୀକ୍ଷ୍ଣ ଶରଜାଳେ କ୍ଳାନ୍ତ
ହୋଇ ଏବେ ଭେକକୁଳ,
ପଙ୍କିଳ ସରସୀ ତେଜି ବିଷଧର
ଅହିଫଣା ତଳେ ଠୁଳ ।
ଜୀବନ ମମତା ନାହିଁ ତିଳେମାତ୍ର
ଏସନ ସମୟେ ଜାଣ,
ମଣନ୍ତି ଜଗତେ ଦୃଷ୍ଟ ଜ୍ୱାଳାମୟ
ଦଗଧ ହୁଏ ପରାଣ । ୧୮ ।

ଗଜକୁଳ ଏବେ ପରସ୍ପରଂରତ
ସମର୍ଦ୍ଦନେ ସରୋବରରେ,
ଛିନ୍ନ ପଦ୍ମନାଡ଼ ତ୍ରାସଗ୍ରସ୍ତ ମୀନ
ଉଡ଼ିଯାନ୍ତି ହଂସ ଖରେ ।
ସମର୍ଦ୍ଦନ ଫଳେ ସରୋବର ବକ୍ଷ
ଅତି ଅସୁନ୍ଦର ଦିଶେ,
ଜଳଯୁକ୍ତ ସର ଶୋଭାହୀନ ଆହା
କର୍ଦ୍ଦମ-ପୂରିତ କି ସେ । ୧୯ ।

ଆପଣା ଗରଳ, ଦାବାଗ୍ନି ଚୌଦିଗେ
ତହିଁ ଚଣ୍ଡ ସୂର୍ଯ୍ୟକର,
ସେ ତାପେ ତାପିତ ସମୀର ଭକ୍ଷଇ
ଦେଖ ଏବେ ବିଷଧର ।
ମସ୍ତକେ ତାହାର ଜକ ଜକ ଦିଶେ
ଆହା ତା' ଅମୂଲ୍ୟମଣି,
କ୍ଳାନ୍ତ ଅବସ୍ଥେ ଅଦୂର ମଣ୍ଡୂକେ
ଗ୍ରାସ ନ କରଇ ଫଣୀ । ୨୦ ।

ଅଶ୍ୱଷ ସକଳ ତୃଷାତୁର ପ୍ରାଣେ
ଜଳ ଲୋଡ଼ି ଊର୍ଦ୍ଧ୍ୱମୁଖେ,
ପର୍ବତ ଗହ୍ୱରୁ ଗମନ୍ତି ଚୌଦ୍ଧରେ
ରସନା ବିସ୍ତାରି ଦୁଃଖେ ।
ସବୁରି ବଦନ ଫେନଯୁକ୍ତ ଏବେ
ମୁଖ ସଦା ବିସ୍ତାରିତ,
ବିଚରଣ କରି ଆତୁର ପରାଣେ
ଜଳଲାଗି ସନ୍ତାପିତ ।୨୧।

ଦାବାନଳ ଦାହେ ଶସ୍ୟାଙ୍କୁରମାନ
ମଳିନ ଦିଶଇ ସିନା,
ବୃକ୍ଷ ପତ୍ରରାଶି ଶୁଷ୍କ ଚଉଦ୍ଧରେ
ବିକ୍ଷିପ୍ତ ସଲିଳ ବିନା ।
ମିହିର ପ୍ରଚଣ୍ଡ କିରଣ ପରଶେ
ଶୁଷ୍କ ଜଳରାଶି ଏବେ,
ବିଲୋକ ଏସନ ଗ୍ରୀଷ୍ମ ଦୃଶ୍ୟ ମନେ
ନ ଜାଗେ ହରଷ କେବେ ।୨୨।

ଅଧିକ ଉତ୍ତାପେ ବୃକ୍ଷ ଶୀର୍ଣ୍ଣପତ୍ର
ଭୂତଳେ ପତିତ ସତ,
ପତ୍ରହୀନ ବୃକ୍ଷେ ବିହଗ ସକଳ
ଘୂରୁଥାନ୍ତି ଇତସ୍ତତ ।
ଗପ୍ଳଳ ସକଳ ପିପାସିତ ପ୍ରାଣେ
ବିଚରନ୍ତି ତଉପାଶ,
କୂପେ ଜଳ ଦେଖି ଶରଭ ଆବର
ଲେଡ଼େ ଲଭି ବହୁ ହ୍ରାସ । ୨୩ ।

କୁସୁମ୍ଭ କୁସୁମ ସମ ରକ୍ତରାଗେ
ଦାବାଗ୍ନି ଜଳଇ ଖରେ,
ସିନ୍ଦୂର ପ୍ରଭାକୁ ଗଞ୍ଜନ କରଇ
ସେହି ଦୃଶ୍ୟ ଥରେ ଥରେ ।
ଅଦୂର ପାଦପ ଲତିକା ସକଳେ
ଆଲିଙ୍ଗନେ ସଚଞ୍ଚଳ,
ତଉଦଗ ଧୋର ଭୂମି ମଧ୍ୟଭାଗ
ଗ୍ରାସିବା ଆଶେ ବିକଳ । ୨୪ ।

ବାତ୍ୟାଯୋଗେ ଅଗ୍ନି-   ଶିଖା ବର୍ଦ୍ଧମାନ
ପର୍ବତ କନ୍ଦରେ ଜଳେ,
ଭୀଷଣ ଶବଦେ   ବଂଶଗ୍ରନ୍ଥି ଫୁଟି
ତୃଣେ ଲାଗେ ହବାଦରେ ।
ତାହା ଯୋଗେ ସାରା   ବନ ଦଗ୍‌ଧୀଭୂତ
ହୁଅଇ ଏକାଳେ ତେଣୁ
ଭୀତ ମନେ ମୃଗ   ସକଳ ଧାବନ୍ତି
ତଜ୍ଜଦଗେ ସିନା ଏଣୁ । ୨୫ ।

ଶାଲ୍ମଳୀ କାନନେ   ସହସ୍ର ଗୁଣରେ
ପ୍ରଜ୍ୱଳିତ ହୁତାଶନ,
ପାଦପ କୋଟରେ   ହୁଏ ଧ୍ୱନ୍ୟମାନ
ବହନ୍ତେ ଖର ପବନ ।
ଲମ୍ଫ ଦେଇ ଅବା   ଶାଖାରୁ ଶାଖାକୁ
ଦାବାଗ୍ନି ପ୍ରଖରେ ଧାଏଁ,
ଚକିତ ବନାଘ   ସେହ୍ୱ ଭୀମ ଧ୍ୱନ୍ୟେ
ହଳାପ-ଗୀତ କି ଗାଏ । ୨୬ ।

ଅନଳ ତେଜରେ ଗସ୍ତ୍ମଳ, କ୍ଳେଶଶ୍ଚ
ଗଜ ଆଦ୍ଧ ବନ ପ୍ରାଣୀ,
ଭୁଲି ଶତ୍ରୁଭାବ ଏକାଧାରେ ଏବେ
ବିଚରନ୍ତ କବା ଜାଣି ।
ଦାବାଗ୍ନି ପ୍ରକୋପେ ଆପଣା ପ୍ରଭାବ
ପାଶୋରନ୍ତ କ୍ଷଣ କ୍ଷଣ,
ଗିରିଗୁହା ମଧ୍ୟ ବାହାର ସଧୀରେ
ଜଳାଶୟୁ ଠାବେ ମନ । ୨୭ ।

କମଳେ ପୂରିତ ସରୋବର ଆଜ
ପାଟଳୀକୁସୁମ ବାସ,
ମଳୟ ପବନେ ଶୀତଳ ଶରୀର
ଚନ୍ଦ୍ରିକା ସେବନେ ଆଶ ।
ସଜନ ରେ ! ଆଜ ଏ ନିଦାଘ କାଳେ
ସେବମାସୁ ପୁଷ୍ପମାଳ,
ସୁରମ୍ୟ ପ୍ରାସାଦେ ମଧୁର ସଙ୍ଗୀତେ
ମହାମୋଦେ ଯାପ କାଳ । ୨୮ ।

---

## ଦ୍ୱିତୀୟ ସର୍ଗ

### ବର୍ଷା ବର୍ଣ୍ଣନ

( ରାଗ—ଆଷାଢ଼ ଶୁକ୍ଳ ବାଣୀ )

କାମିଜନ ପ୍ରିୟ ବରଷା କାଳ,
ନୃପ ସମ ସମାଗତ ଏ କାଳ,
ମତ୍ତ ଦ୍ୱିରଦ ଜଳ ବର୍ଷୀ ମେଘ,
ବିଜୟ ଚପଳ ବିଦ୍ୟୁତ ବେଗ,
ସତ୍ୟ ! ବଜ୍ରନାଦ,
ଶୁଭ ଆଗମନ ଘୋଷଣା-ବାଦ୍ୟ । ୧ ।

ଗଗନ ଅଙ୍ଗେ କାହିଁ ନୀଳୋତ୍ପଳ,
ଛବିଳ କାନ୍ତି ଅତି ମନୋହର,
ଆବର କାହିଁ ଦଳା-କୃଷ୍ଣ-ବର୍ଣ୍ଣ
କାହିଁ ବା ଗର୍ଭବତୀ ପୀନ-ସ୍ତନ-
ସମ ପାଏ ଶୋଭା,
ବିଚିତ୍ର ଗଗନ, ମାନସ ଲୋଭା । ୨ ।

ଜଳସ୍ତରେ ବାଣବାଦ୍ୟ ଲମ୍ବିତ,
ଶ୍ରୁତି ମଧୁସ୍ୱନେ ବର୍ଷି ଭୂଷିତ,
ଭ୍ରମେ ଏଣେ ତେଣେ କେସନ ବେଗେ,
ଅଧୀର ପବନେ ପ୍ରେମ-ଆବେଗେ,
ଚାତକ ସକଳ,
ଊର୍ଦ୍ଧ୍ୱେ ଚାହିଁ ଅବା ମାଗନ୍ତି ଜଳ । ୩ ।

ଦୂର ପରବାସୀ ସହ ସମର,
ଆଣେ ଧାବମାନ କି ଜଳଧର,
ରଣ ଦୁନ୍ଦୁଭି ତା' ଅଶନି-ଠାଣ,
ଇନ୍ଦ୍ରଧନୁ ଗୁଣ ଚପଳା ଜାଣ,
ଘନ ଜଳଧାର,
ସୁତୀକ୍ଷ୍ଣ ଶାୟକ ଅବା ତାହାର । ୪ ।

ବଇଡୂର୍ଯ୍ୟମଣି ପ୍ରାପ୍ତ ଅଙ୍କୁରେ,
କନ୍ଦଳୀ ନବଦଳ ତହିଁ ପୂରେ,
ସାଧବବୋହୂ ଚଳା କେଡ଼େ ଧୀର,
ଧରଣୀରାଣୀର ବେଶ ରୁଚିର,
ସୁନ୍ଦରୀ ରମଣୀ,
ସମ ଶୋଭା ପାଏ ଆଜି ଧରଣୀ । ୫ ।

ନବ ବର୍ଷାଗମେ ମୟୂରମାନ,
ଆନନ୍ଦ ଉତ୍ସବେ କରନ୍ତି ଗାନ,
ପ୍ରସାରି କଳାପ କେକା ଧ୍ୱନିରେ,
ଚୁମ୍ବନ, ଆଶ୍ଳେଷ ଲୋଡ଼ି ଅଧୀରେ,
ନୃତ୍ୟରତ ବନେ,
ବିଲୋକି ଜଳଦ ମାଳ ଗଗନେ ।୬।

ତଟିନୀ ପୂରିତ ଆବିଳ ଜଳେ,
ସାଗର ସଙ୍ଗମେ ଧବନ୍ତି ଖରେ,
ତଟବର୍ତ୍ତୀ ଦ୍ରୁମମାନ ଭସାଇ,
କୁଳଭ୍ରଷ୍ଟା ନାରୀ ସମ ଧସାଇ,
ଅଙ୍ଗଭଙ୍ଗୀ ଛଳେ,
ମିଳେ ଅବାରିତେ ଜଳଧିଜଳେ ।୭।

ବିନ୍ଧ୍ୟଗିରି ଶୋଭା ନୋହେ ବରନ୍ତ
ହରଇ ମାନସ ଦେଖି ରେ ଧନ,
ମୃଗମୁଖକ୍ଷତ ସୁନୀଳ ତୃଣ,
ନବୋଦ୍‌ଗମ ହୋଇ କି ଶୋଭା ପୁଣ,
ପାଦପ ସରବେ,
ମଞ୍ଜୁରି ଦେଖି ନବପଲ୍ଲବେ ।୮।

ନିକଟାମସ୍ତ ଏ ବନ ପ୍ରାନ୍ତର,
କୁରଙ୍ଗ କୁଳେ ବା ଶୋଭେ ସଭ୍ଵର,
ମାଳକଇଁ-ନେଣେ ଧାବନ୍ତି ଖରେ,
ଦରଶନେ ପ୍ରାଣ ପୁଲକେ ଭରେ,
ଚଞ୍ଚଳ ମୋ ମତି,
ଜାଗେ ଉତ୍କଣ୍ଠା ପରାଣେ ଅତି । ୯ ।

ମନ୍ଦ୍ର ନାଦେ ଆଗମନ ସୂଚିତ,
ନିଶା ଅନ୍ଧକାର ହୁଏ ଚୂରିତ,
ଦୃଶ୍ୟ ନୁହେଁ ଦିଗ ଭୀଷଣ ମେଘେ,
ମାଝ ଚଳେ ଅଭିସାରିକା ବେଗେ,
ଚପଳା ପ୍ରଭବେ,
ପ୍ରିୟତମ ପାଶେ ସଙ୍କେତ ଠାବେ । ୧୦ ।

ଅଭିମାନିନୀର ଦରପ ନାଶି,
ରଚିଥିଲି ମାନ ତ୍ରଣସ୍ତି-ପାଶି;
ଚଢ଼ିତ ଶବଦେ ଭୀତ ପରାଣେ
ଆଲିଙ୍ଗନ କରେ ପ୍ରେମିକେ ଟାଣେ;
ଭୁଲି ଅଭିମାନ,
ଲେଉଟାଇ ଅଙ୍ଗ ପାରୁଶ ଜାଣ । ୧୧ ।

ପ୍ରୋଷିତଭର୍ତ୍ତୃକା ଲଭଇ ଦୁଃଖ,
ନ ଲଭି ପତିର ମିଳନ-ସୁଖ,
ଝରେ ଅଶ୍ରୁବିନ୍ଦୁ ନୟନୁଁ ତାର,
ବିମ୍ବାଧର ତଳେ କ ସ୍ଥିରଖାର,
ପୁଷ୍ପ, ଅଳଙ୍କାର,
ବିଷାଦେ କରିଛି ଅଙ୍ଗୁଁ ବାହାର । ୧୨ ।

ଆବିଳ ସଲିଳ ସ୍ରୋତ ବହଇ,
ରଜ, ତୃଣ, କାଠ ତହିଁ ପୂରଇ,
ଭୁଜଙ୍ଗ ପରାୟେ ବହେ ପ୍ରଖରେ,
ନିମ୍ନ ଅଭିମୁଖେ କ ତରତରେ,
ଭୟେ ଭେକ ଭେକୀ,
ସର୍ପ ମଣି ତାରେ ଥାନ୍ତି ନିରେଖି । ୧୩ ।

ମଳିନ କମଳ ବରଷାଧାରେ,
ଅଳି ଖୋଜେ ନବ କୁମୁଦ ବାରେ,
ନ ଲଭି ଶେଷେ ସେ କରେ ଗୁଞ୍ଜନ,
ମତ୍ତ ହୋଇ ଚଳ ଚଳ ବଦନ,
ନୃତ୍ୟରତ ବର୍ହୀ,
କଳାପେ ଶେଷରେ ପଡ଼ନ୍ତ ସହି । ୧୪ ।

ନବ ଜଳଧର ଘୋର ଗର୍ଜ୍ଜନେ,
ପ୍ରତିଦ୍ୱନ୍ଦ୍ୱି-ଶଙ୍କ ଭଗ୍ନଶ ମନେ,
ଅରଣ୍ୟ ମାତଙ୍ଗ କମ୍ପାଏ ତାନେ,
ଯୁଦ୍ଧ କରିବାକୁ ତା ସାଥେ ଟାଣେ,
ଅଳ ମଦବାରି-
ଯୋଗେ ଅଭିଷିକ୍ତ ଶିର ତାହାରି । ୧୫ ।

ଉତ୍କଣ୍ଠା ଜଗାଏ ଶିଖଣ୍ଡୀ ଆଜ,
ଶ୍ୱେତ-ପଦ୍ମ-ପ୍ରଭ ଜଳଦରାଜ,
ଉପଳ ଶ୍ରେଣୀରେ ଦେଇ ଚୁମ୍ବନ,
ଖରତରେ ଧାଇଁଯାଏ ବହନ,
କେକା ପୁଚ୍ଛ ଟେକ,
ରଚେ ମୋଦେ ନୃତ୍ୟ ସେ ଦୃଶ୍ୟ ଦେଖି । ୧୬ ।

ବରଷା ସମୀର କ ମୁଗ୍‌ଧକର,
କଦମ୍ବ, ଅର୍ଜ୍ଜୁନ, ଶାଳ ପ୍ରାନ୍ତର,
ସୁଶୀତଳ ବାୟୁ ବହେ ସଧୀରେ,
କୁସୁମ-ସୌରଭ ବଞ୍ଚ ଅଧୀରେ,
କାହାର ହୃଦୟ,
ନ ହେବ ଏକାଳେ ଆନନ୍ଦମୟ । ୧୭ ।

ସାଜ ଅଙ୍ଗଲତା କାମିନୀକୁଳ,
ନିତମ୍ବ-ଚୁମ୍ବୀ ଥା' କେଶ ମଞ୍ଜୁଳ,
ସୁଗନ୍ଧ କୁସୁମେ ଭୂଷିତା ସେନ୍ଥ,
ସ୍ତନ ତଟେ ହାର ଶୋଭଇ ରନ୍ଥ,
ସୁନ୍ଦର ବଦନୁଁ,
ଫୁଟେ ଯା କାନ୍ତି, ଭୁଲି ନୋହେ ମନୁଁ । ୧୮ ।

ପରବାସୀ ମନେ ଆଣେ ଆବେଗ,
ଜଳଭାରନତ ନବୀନ ମେଘ,
ବିଦ୍ୟୁଲ୍ଲତା, ଇନ୍ଦ୍ରଧନୁ ଶୋଭିତ,
କୁଣ୍ଡଳେ ବଗଙ୍ଗୀ ଯିନା ଭୂଷିତ,
ବିଲୋକ ଏସନ,
ଦହନ ହୁଅଇ ବିରହି-ମନ । ୧୯ ।

ଫୁଲ୍ଲ କଦମ୍ବ, ବକୁଳ କଳିକା,
କେତକୀ କୁସୁମେ ଗୁନ୍ଥି ମାଳିକା,
ଶିରଭୂଷଣ କରନ୍ତି ଏ ବାଳା,
କଣ୍ଠେ ଖୋସି ବନମଲ୍ଲିକା ମାଳା,
ମନ ଇଚ୍ଛା ଯାହା,
ଭୂଷଣେ ସଜ୍ଜିତା ରମଣୀ ଆହା । ୨୦ ।

ଜଳଦ-ଆଗମେ ରମଣୀ ଲଭିବେ,
ଅଗୁରୁ ଚନ୍ଦନ ସୁଗନ୍ଧ ଦ୍ରବ୍ୟେ,
ଚର୍ଚ୍ଚିତ କରି ଅଙ୍ଗଯଷ୍ଟି ହାସେ,
କୁସୁମ-ଭୂଷଣ ତା' କେଶପାଶେ,
ସନ୍ଧ୍ୟା ଆଗମନେ,
ଶୟନମନ୍ଦିରେ ମିଳେ ସଘନେ । ୨୧ ।

ପତିବିରହିଣୀ ବାମା ଅନ୍ତର,
ଜଳଦ କରଇ ସିନା କାତର,
ଜଳଭାରନତ, ମନ୍ଦ୍ର, କମ୍ପିତ,
ସମୁନ୍ନତ, ଇନ୍ଦ୍ରଧନୁ ଶୋଭିତ,
ବିଭିନ୍ନ ବରନେ,
ଭୟ ଆଣେ ବିରହିଣୀର ମନେ । ୨୨ ।

ନବଜଳପାତେ ତାପ ଦୂରିତ,
ପ୍ରସ୍ଫୁଟିତ ପୁଷ୍ପେ ବନ ପୂରିତ,
କଦମ୍ବ ଛଳେ କି ହାସ ପ୍ରକାଶେ,
ନୃତ୍ୟ ରଚେ ଅବା ପବନ ଶ୍ୱାସେ,
କେତକୀ ପରାଗ,
ଛଳେ କି ହସେ ବନ୍ଧୁ ଅନୁରାଗ । ୨୩ ।

ପ୍ରେମିକ ସଜାଏ ପ୍ରିୟାରେ ଯଥା,
ସଜାଏ ଜଳଦ-ନାରୀଙ୍କୁ ତଥା,
ମଧ୍ୟେ ମାଳତୀ କୁସୁମ ଖଚିତ,
ବକୁଳମାଳା ମସ୍ତକେ ରଚିତ,
ଯୂଥି କଳି ସଙ୍ଗେ,
କଦମ୍ବ ଫୁଲ କର୍ଣ୍ଣଭୂଷା ରଙ୍ଗେ । ୨୪ ।

ରମଣୀ ଅଙ୍ଗଟି କ କମନୀୟ,
ପୀନସ୍ତନେ ହାର କ ରମଣୀୟ,
ଆବୃତ ନିତମ୍ବେ ଶୁକ୍ଳ ବସନ,
କଣ୍ଟକିତ ରୋମରାଜି ବନ୍ଧନ,
ତ୍ରିବଳୀ ତା ଶୋହେ,
କଟି ଶୋଭା ତା'ର ମାନସ ମୋହେ । ୨୫ ।

କଳା ବଉଦର ମତ୍ତ ପବନ,
ବରଷା ପରଶ ଧାରେ ବନ୍ଧନ,
ଜଳକଣା ଯୋଗେ ଲାଗେ ଶୀତଳ,
କେତକୀ ପରାଗ କ ମନୋହର,
ଫୁଲ ଭରାନତ,
ଲତିକାରେ ନାଚଏ ସେ ସତତ । ୨୬ ।

ଗଗନଚୁମ୍ବୀ ଏ ବିନ୍ଧ୍ୟପର୍ବତ,
ଜଳଧରେ ଯେଉଁ କାଳେ ଆନତ,
ଆଶ୍ରୟ ଦିଅଇ ଆମ୍ଭଙ୍କୁ ବାରେ,
ତା ଯୋଗ୍ୟ ଆଳିଙ୍ଗଇ ମେଘ ତାରେ,
ଶାନ୍ତ ଲଭେ ଗିରି,
ପାଇ ଜଳଦର ଅପୂର୍ବ ଶିକ୍ଷା । ୨୭ ।

କାମିନୀରଞ୍ଜନ ବର୍ଷା ସମୟ,
ସ୍ନେହପୂର୍ଣ୍ଣ ତଥା ଆନନ୍ଦମୟ,
ତରୁଲତାଙ୍କର ଏ ପ୍ରିୟବନ୍ଧୁ,
ପରାଣ ତୋଷଣେ ଯଥା ସେ ଇନ୍ଦୁ,
ହୃଦୟ କାମନା,
ପୂର୍ଣ୍ଣ କର ପ୍ରିୟେ ! ନୋହି ବିମନା । ୨୮ ।

# ତୃତୀୟ ସର୍ଗ

## ଶରତ୍ ବର୍ଣ୍ଣନ

( ରାଗ—ଶଙ୍କରାଭରଣ )

ମନୋଜ୍ଞ ରୂପଶାଳିନୀ ଶରତ ସୁନ୍ଦରୀ,
ସ୍ବଚ୍ଛପଦ୍ମ-ମୁଖ କାଶଫୁଲ-ବାସ ଧରି,
ବଧୂ ରୂପେ ଆସେ ରଙ୍ଗେ,
ହଂସ ନାଦ ନୂପୁର ତା ଶାଳିଧାନ୍ୟ-ଅଙ୍ଗେ । ୧ ।

ମଧୂର ଶରତେ ସର୍ବେ ଧବଳ ବରନ,
କାଶଫୁଲେ ମହୀ, ହଂସେ ନଦୀ, ପୁଷ୍ପେ ବନ,
ଜ୍ୟୋତ୍ସ୍ନା ଯୋଗେ ନିଶି ହସି,
ମାଳତୀରେ ଉପବନ· କୁମୁଦେ ସରସୀ । ୨ ।

ମଦାଳସା ସମ ବହେ ତଟିନୀ ମନ୍ଥରେ,
ଶଫରୀ ନର୍ତ୍ତନ ଛଳେ ପିନ୍ଧି ଶ୍ୱେତାମ୍ବରେ,
ଦୁଇକୂଳ ହଂସରାଜ,
ହାର ଅବା ତାର, ତଟ-କଦମ୍ବ ବିରାଜ । ୩ ।

ନୃପ ସମ ଶୋହେ ପ୍ରିୟେ ! ଆଜ ଏ ଗଗନ,
ମେଘ ଖଣ୍ଡ ରୌପ୍ୟ, ଶଙ୍ଖ, ମୃଣାଳ ବରନ,
ହେଲେ ଜଳକଣା ଶୂନ୍ୟ,
ଶୁଭ୍ର ହୋଇ ଦିଶନ୍ତ ଅମ୍ବରରେ ପୂର୍ଣ୍ଣ । ୪ ।

ଦଳିତ ଅଞ୍ଜନ ସମ ଗଗନ ଶୋଭିତ,
ବଧୂଳି କୁସୁମେ ମହୀ ଦିଶଇ ଲୋହିତ,
ପକ୍ୱଧାନ ଶସ୍ୟ କ୍ଷେତେ,
କହ କେ ନ ହେବ ବାଇ ଦେଖି ତାହା ନେତେ ।୫।

କଞ୍ଚନ କୁସୁମ ସଖି ! ଲୋଭି କରେ ମନ,
ମନ୍ଦ ବାତେ ଦୋଳ ଜା'ରେ ଡାକଇ ବନ୍ଧନ,
ମଧୁ ଆଶେ ଏଥି ଅଳି,
ମତ୍ତ ହୋଇ ନାଚେ ଏବେ ଦେଖ ଢଳ ଢଳ । ୬ ।

ସକା ବନ୍ଦେ ବେଢ଼ି ବେଳ ପ୍ରମଦା ପରାସ୍ତ,
ଉଜ୍ଜ୍ୱଳ ତାରକା ତା'ର ବିଭୂଷଣ ନ୍ୟାସ୍ତ,
ମେଘ ରୂପ ଓଢ଼ଣାରୁ,
ଜ୍ୟୋତ୍ସ୍ନା-ଶୁକ୍ଳ ବାସୁଁ ଦିଶେ ଚନ୍ଦ୍ର-ମୁଖ ଗୁରୁ । ୭ ।

ତଟିନୀ ଦୃଶ୍ୟ ପରାଣେ ଦିଏ ତୋଷ ରଙ୍ଗେ,
ନାଚି ନାଚି ହଂସ ଶ୍ରେଣୀ ଭାସନ୍ତି ତରଙ୍ଗେ,
ପଦ୍ମ ଫଗେଗ ପଟଳେ,
କଳରୁତଯୁତ ହଂସ ନାଚେ କୁତୂହଳେ । ୮ ।

ମଧୁର ଶରତେ ପଞ୍ଚବିଯୋଗିନୀ ନାରୀ,
ବିରହ ବିକ୍ଷେ ସର୍ବଦା ହେଉଥାଏ ଘାରି,
ହିମବର୍ଷୀ ଚନ୍ଦ୍ର ଦେଖି,
ଦଗ୍‌ଧୀଭୂତ ପ୍ରାଣେ ଥାଏ ଆନନ୍ଦ ଉପେକ୍ଷି । ୯ ।

ଫଳଶ୍ୱସନତ ଧାନ୍ୟକ୍ଷେତ୍ରେ ବାୟୁ ଖେଳେ,
ପୁଷ୍ପାନତ ଲତିକା ନର୍ତ୍ତଏ କେତେବେଳେ,
ଫୁଲ୍ଲ ପଙ୍କଜ ଶୋଭିତ,
ମୃଣାଳିନୀ ଅଙ୍ଗେ ପୁଣି କରେ ବିକମ୍ପିତ । ୧୦ ।

ସରୋବର ଦୃଶ୍ୟ ପ୍ରାଣ ହରେ ବାରମ୍ବାର,
ମଦୋନ୍ମତ୍ତ ହଂସ କ୍ରୀଡ଼ା ରଚେ ବକ୍ଷେ ତାର,
ପଦ୍ମଯୋଗେ ବିଭୂଷିତ,
ମନ୍ଦବାତେ ନୃତ୍ୟରତ ତରଙ୍ଗେ ପ୍ଲୁତ । ୧୧ ।

ଲୁପ୍ତ ଆଜି ଇନ୍ଦ୍ରଧନୁ ଜଳଦଗରଭେ,
ବର୍ଷାବିଜୟ ପତାକା—ସୌଦାମିନୀ ଲଭେ,
ନାହିଁ ବକପନ୍ତି ନଭେ,
ଜଳଦ ବିଦାୟେ କେକୀ ନୃତ୍ୟ ନ ଆରମ୍ଭେ । ୧୨ ।

କଦମ୍ବ କୁଞ୍ଜେ ବନ ନୋହେ ଭରପୂର,
ନୀରଦ ଗଗନେ ଆଜି ନ ନାଚେ ମୟୂର,
କେକୀ ଚେତଜଣ ମଦନ,
କଳହଂସ ସପ୍ତପର୍ଣ୍ଣୀ ଆଶ୍ରୟେ ତା' ମନ । ୧୩ ।

ଶେଫାଳୀ କୁସୁମେ ଆଜ ହସେ ଉପବନ,
ବହଗ କାକଳୀ ପ୍ରାଣେ ଢାଳଇ ସ୍ପନ୍ଦନ,
ତୃଣଶାୟୀ ମୃଗୀକୁଳ,
ନୟନ କମଳ ମେଲ ଗୃହାନ୍ତ ମଞ୍ଜୁଳ । ୧୪ ।

ବାୟୁ ବଚନ ବଳାସେ ଉଲ୍‌କଣ୍ଠିତ ମନ,
ପଦ୍ମ, କୁମୁଦ କହ୍ଲାରେ ନଚ୍ଚଇ ବହନ,
ଶୀତ ସ୍ନିଗ୍ଧ ଛାହା ଯୋଗେ,
ପଦାନ୍ତ ଲଗ୍ନ ଶିଶିରେ କ୍ଷରଏ ସଯୋଗେ । ୧୫ ।

ଗ୍ରାମ ସୀମାନ୍ତ ପବନେ ଆଣଇ ପୁଲକ,
ଶାଳଧାନ୍ୟେ ସମାବୃତ ଏ ପଲ୍ଲୀ ମୁଲକ,
ପରପୁଷ୍ଟ ଧେନୁ ସର୍ବେ,
ଧ୍ୱନତ ଗ୍ରାମ ପ୍ରାନ୍ତର ହଂସ କଳରବେ । ୧୬ ।

ଲଳନା ସୁଷମା ଗଞ୍ଜେ ଶରତ ସୁନ୍ଦରୀ,
ମରାଳ ଗମନ ଫୁଲ୍ଲ ପଦ୍ମ ମୁଖ ଧରି,
ମାଳକଲେଁ ଦୃଷ୍ଟିଭଙ୍ଗୀ
ତରଙ୍ଗ ନକର ତା'ର କଟାକ୍ଷ ଭ୍ରୂଭଙ୍ଗୀ । ୧୭ ।

ପୃଷ୍ଠଦ୍ୱାର ଅବନତ ପଲ୍ଲବ ତା' କର,
ଅଶୋକ ସହ ମାଳତୀ ପ୍ରସୂନ ନିକର,
ବାଳା ସୁମଧୁର ହସ,
ସୁଷମା ଆପ୍ଳୁତ କରେ ଏ କାଳେ ଅବଶ୍ୟ । ୧୮ ।

ଜଳଦ କୃଷ୍ଣ କୁଞ୍ଚିତ କେଶାଗ୍ରେ ଯୁବତୀ,
ଖୋସିଛୁ ସଗରେ ଆହା ଏ ମଧୁ ମାଳତୀ,
ହେମ କୁଣ୍ଡଳ ଶୋଭିତ,
କର୍ଣ୍ଣଯୁଗଳେ ତା' ମାଳ କଇଁ ବିରଜିତ । ୨୯ ।

ଅସୀମ ଆନନ୍ଦେ ଏବେ ରମଣୀ ସକଳ,
ଚନ୍ଦନ ବାସିତ ହାରେ ମଣ୍ଡି ପୟୋଧର,
କାଞ୍ଚି ଦାମ ନିତମ୍ବରେ,
ରତ୍ନ ରଚିତ ନୂପୁର ଚରଣ କମଳେ । ୨୦ ।

ମେଘଶୂନ୍ୟ ନଭ ଚନ୍ଦ୍ର, ତାରା ଫେନ ଶୋଭା,
ଜଳାଶୟ ଅପରୂପ ଶିରୀ ମନଲୋଭା,
ଫୁଲ୍ଲ କୁମୁଦେ ଆବୃତ,
ମର୍କତମଣି ଆଭାରେ ଜଳ ଅଳଙ୍କୃତ । ୨୧ ।

କୁମୁଦ ସଂସର୍ଗେ ଶୀତ ବାୟୁ ବହେ ଜାଣ,
ଜଳଦ ଜାଲ ବିମୁକ୍ତ ସର୍ବଦିଗମାନ,
ପଙ୍କଶୂନ୍ୟ ଏବେ ମହୀ,
ଜଳ ସ୍ୱଚ୍ଛ, ଚନ୍ଦ୍ର ତାର୍ ଶୋଭା ନୋହେ କହି । ୨୨ ।

ସଜ୍ଜିବନୀ ନ ସ୍ତ ସମ ପଦ୍ମିନୀ ହରଷେ,
ହାଇ ମାରି ଉଠେ ରବି କିରଣ ପରଶେ,
କହିଁ ମଳିନ ଦିଶିଲି,
ପ୍ରବାସିବଧୂ ହାସ କି ଅଧରେ ମିଶିଲି । ୨୩ ।

ପ୍ରିୟା ବିରହୀ କ୍ଷଣେ ନ ହୁଏ ବିରତ,
ଚନ୍ଦ୍ରଜଳେ ଦେଖି ଚନ୍ଦ୍ରେ ତା' କୃଷ୍ଣ ନୟନ,
ନୂପୁରକୁ ହଂସନାଦେ,
ବନ୍ଧୂଳି କୁସୁମେ ଭଳେ ପ୍ରିୟାମୁଖ ନାଦେ । ୨୪ ।

ଶରତ ଦେଲ୍ ପ୍ରମୀଳା ମୁଖେ ଚନ୍ଦ୍ରକାନ୍ତି,
ବନ୍ଧୂଳି ଫୁଲ ରକ୍ତିମା ଅଧରେ କି ଭ୍ରାନ୍ତି,
ହଂସ କାକଳୀ ନୂପୁରେ,
ରହି ଅନ୍ତର୍ହିତ ହୋଇଗଲା ବହୁଦୂରେ । ୨୫ ।

କାମ ଉନ୍ମାଦନୀ ନାସ୍ତ ସମ ଏ ଶ୍ୱରତ,
ଫୁଲ୍ଲ ପଦ୍ମମୁଖୀ; ମାଳ କଇଁ ନେତ୍ରୀ ସତ,
ପିନ୍ଧି କାଶ ଶୁକ୍ଳ ବାସ,
କୁମୁଦ ସୁନ୍ଦର କାନ୍ତ ଦୁଃଖ କରେ ନାଶ । ୨୭ ।

---

## ଚତୁର୍ଥ ସର୍ଗ

### ହେମନ୍ତ ବର୍ଣ୍ଣନ

( ରାଗ—କଳସା )

ଝୁମ୍ପୁଁ ଝୁମ୍ପୁଁ ହମ ଚଳ ହେମନ୍ତ ସମୟ,
ଲୋଧ୍ରପୁଷ୍ପ ମନୋହର, ଧବଳ ଶସ୍ୟମୟ । ୧ ।
ପକ୍ୱଶାଳିଧାନ୍ୟ ଅହା ଦିଶେ କି ସୁନ୍ଦର,
ତୁଷାରଘାତେ ନଷ୍ଟ କମଳ ନିକର । ୨ ।

ବିଳାସିମା ନାଣ୍ଟ ଏବେ ପୀନପୟୋଧରେ,
କୁଙ୍କୁମ ନ ଲେପେ ଆଉ ଆନନ୍ଦ ମନରେ । ୩ ।
ତୁଷାର କୁନ୍ଦେନ୍ଦୁ ସମ ସ୍ୱଚ୍ଛ ମଣିହାର,
ନ ଶୋଭଇ ପୟୋଧର ଯୁଗଳେ ତାହାର । ୪ ।

ଭୁଜଲତିକାରେ ବିଳାସିମା ବାଳା ଆଜ,
ଆନନ୍ଦମନେ ବଳୟ ନ ଦିଅଇ ସାଜ । ୫ ।
ନିତମ୍ବେ ନବୀନବାସ ନ ମଣ୍ଡେ ଚଞ୍ଚଳେ,
ସୂକ୍ଷ୍ମବାସ ନ ମଣ୍ଡଇ ଉରଜ ଯୁଗଳେ । ୬ ।

କନକ-ସୂତ୍ର-ଗ୍ରଥିତ କାଞ୍ଚୀଦାମ ଖରେ,
ଭୂଷଣ ନ କରେ ବାଳା ନିତମ୍ବ ଦେଶରେ । ୭ ।
ମଞ୍ଜୁ ନୂପୁର କରନ୍ତେ ହଂସ କଳଧ୍ୱନି,
ରମଣୀ ପଦଯୁଗଳେ ନ ଶୋଭେ ଏକ୍ଷଣି । ୮ ।

ସୁରତ-ଉତ୍ସବେ ମାତି ସୁନ୍ଦରୀ ସକଳ,
ଦାରୁଚୂର୍ଣ୍ଣେ ଚରଚିତ କରି କଳେବର । ୯ ।
ମୁଖପଦ୍ମ ପତ୍ରଲେଖା ଯୋଗେ ବିଭୂଷିତ,
କେଶକଳାପେ ଅଗୁରୁ ଧୂପେ ମଣି ହିତ ।୧୦ ।

ଉତ୍ତପ୍ତମେ କୃଶାଙ୍ଗୀର ବଦନ-କମଳ,
ପାଣ୍ଡୁର ବରନ ହଣେ ନୋହ୍ନ ମନୋହର । ୧୧ ।
ଗ୍ରିଷ୍ମରୁଷ୍ଟ-ଦନ୍ତାଘାତେ ପ୍ରପୀଡ଼ିତ ଯେଣୁ,
କରି ନ ପାରଇ ବାଳା ଉଚ୍ଚହାସ୍ୟ ତେଣୁ । ୧୨ ।

ଶୀତକୋପେ ପୀନସ୍ତନ ମଣ୍ଡି ଉଷ୍ଣବାସେ,
ଆବୃତ କରଇ ବାଳା ସୁମଧୁର ହାସେ । ୧୩ ।
କଠୋର ସ୍ତନପୀଡ଼ନ ନ ପାରଣି ସହି,
କାନ୍ଦେ କି ଶିଶିର ଛଳେ ଶୀତ କ୍ଲେଶ ବହି । ୧୪ ।

ଶସ୍ୟରାଶି ଯୋଗେ ପୂର୍ଣ୍ଣ କ୍ଷେତ୍ର ସୀମାନ୍ତର,
ତା' ପାଶେ ଚରନ୍ତି ମୃଗେ ବହି ଅନୁରାଗ । ୧୫ ।
ବକ ମନ୍ଦଧ୍ୱନି ଯୋଗେ କ୍ଷେତ୍ରପ୍ରାନ୍ତସ୍ଥଳ,
ହୁଅଇ ପ୍ରତିଧ୍ୱନିତ ଏକାଳେ କେବଳ । ୧୬ ।

ପ୍ରଫୁଲ୍ଲ ସୁନୀଳ କଇଁ ଶୋଭିତ ଏ ସର,
ମଦକଳ ହଂସରାଜ ଭୂଷିତ ଆବର । ୧୭ ।
ନିର୍ମଳ ଜଳରାଶିରେ ପୂର୍ଣ୍ଣ ସରୋବର,
ହରଇ ମାନସ ଯେଣୁ ଅଟେ ସୁଶୀତଳ । ୧୮ ।

ଶ୍ରମ-ଶୀକର-ସିକ୍ତ ଏ ମନ୍ଦ ସମୀରଣେ,
ପ୍ରିୟଙ୍ଗୁଲତିକା କମ୍ପମାନା ଅନୁକ୍ଷଣେ । ୧୯ ।
ପକ୍ୱ ହୋଇ ପାଣ୍ଡୁବର୍ଣ୍ଣ ଦିଶଇ ସେ କ୍ଷୀଣ,
ପ୍ରିୟ-ବିରହିଣୀ କୃଶା ଯଥା ଦିନୁଁଦିନ । ୨୦ ।

ପୁଷ୍ପରସମଦ୍ୟେ ସୁରଭିତ କରି ମୁଖ,
ନିଃଶ୍ୱାସର ପଦ୍ମଗନ୍ଧେ ମଣି ବହୁ ସୁଖ । ୨୧ ।
ପ୍ରଣୟିଯୁଗଳ ଆଜି ମଦିର-ନୟନେ,
ଆଲିଙ୍ଗିଣ ପରସ୍ପରେ ଅଛନ୍ତି ଶୟନେ । ୨୨ ।

ସମ୍ଭୋଗ ଚିହ୍ନ ବିରାଜେ ଯୁବତୀ ସର୍ବାଙ୍ଗେ,
ଅଧର ଦଶନାଘାତେ କ୍ଷତ ଦେଖି ଆଗେ । ୨୩ ।
କରଜାଘାତେ ଉରଜ ଛିନ୍ନ ଭିନ୍ନ ଅହା,
ନିର୍ଦ୍ଦୟ ପ୍ରେମାଲିଙ୍ଗନ ଲଭଇ ସେ ଯାହା । ୨୪ ।

ପ୍ରଭାତ ସୂର୍ଯ୍ୟକିରଣେ ସୁଖକର ମଣେ,
ମଣ୍ଡଇ ବଦନ ବାଳା ଧରି ଦରପଣେ । ୨୫ ।
ପ୍ରିୟଦନ୍ତ ଚିହ୍ନମାନ ଦେଖି ଲଜ୍ଜମନେ,
ଏକାକିନୀ ବସି ହସୁଥାଇ ଅନୁକ୍ଷଣେ । ୨୬ ।

ବାଳସୂର୍ଯ୍ୟକରେ ପୁଣ ଆନ କେଉଁ ନାରୀ,
କାମକେଳ ଶ୍ରମେ ଅଙ୍ଗ ମର୍ଦ୍ଦୁଥାଏ ସ୍ୱାରୀ । ୨୭ ।
ରୈବତରସେ ପୁହାଇଛୁ ସାରା ନଶୀ ସେଣୁ,
ଚନ୍ଦ୍ରାଳସା ପାଣ୍ଡୁ ଚକ୍ଷୁ ମୁକ୍ତକେଶା ତେଣୁ । ୨୮ ।

ଜଳଦ କୃଷ୍ଣ କୁନ୍ତଳା କେଉଁ ନାରୀବର,
ପୀନସ୍ତନଭରେ ତନୁ ଆନତ ଆବର । ୨୯ ।
ନୈଶ ସମ୍ଭୋଗେ ସୌରଭହୀନ ଫୁଲମାଳ,
ମସ୍ତକୁଁ ଆଣି ସେ ରଞ୍ଜେ କେଶପାଶ ତା'ର । ୩୦ ।

ଦଶନାଘାତେ କା' ଓଷ୍ଠେ କ୍ଷତ ବସ୍ତଜାତ,
ମାଳ ଅଳକ ଲମ୍ବିତେ ନୟନ କୁଞ୍ଚିତ । ୩୧ ।
ଉପଭୁକ୍ତ ଅଙ୍ଗ ଦେଖି ପ୍ରେମିକରେ ଗଞ୍ଜେ,
ଲୁଙ୍କମେ ଅଧର କଞ୍ଚୁକରେ ଲୁଚ ରଞ୍ଜେ । ୩୨ ।

ଦୀର୍ଘକାଳ ନୈଶ ରତ- ଶ୍ରମେ କେ ସୁନ୍ଦରୀ,
ଗୁରୁ ପୟୋଧରେ କଣ୍ଟକିତ ରୋମାବଳୀ । ୩୩ ।
କାମ କେଳ ଶ୍ରମେ ପୁଣ ହୋଇ ବଳହୀନା,
ଲେପଇ ସୁରଭ ତୈଳ ଶରୀରେ ନବୀନା । ୩୪ ।

ହେମନ୍ତ ଋତୁରେ ପ୍ରିୟେ ! ସକଳ ସୁନ୍ଦର,
ବିଳାସିନୀ ବାଳା ପକ୍ଷେ' ମଙ୍ଗଳ ଆବର । ୩୫ ।
ପକ୍ୱଧାନେ ପରିପୂର୍ଣ୍ଣ ପଲ୍ଲୀ ଏବେ ସିନା,
ବକପନ୍ତି ମାଲ୍ୟ ଶୋଭେ ଦେଖ ରେ ନବୀନା ! । ୩୬ ।

---

# ପଞ୍ଚମ ସର୍ଗ

## ଶିଶିର ବର୍ଣ୍ଣନ

(ରାଗ— ବଙ୍ଗଳାଶ୍ରୀ କେଦାର)

ଯୁବକ ଯୁବତୀ ପ୍ରିୟ ଏ ଶିଶିର,
ସମାଗତ ପ୍ରିୟେ ! ଦେଖ ଗୋ ମହୀର । ୧ ।
କ୍ରୌଞ୍ଚଧ୍ୱନ ଶାଳିଧାନ୍ୟେ ପୂର୍ଣ୍ଣ ଧରା,
କାମବୃତ୍ତି ବୃଦ୍ଧି ଏ ସମୟେ ପରା । ୨ ।

ରୁଦ୍ଧବାତାୟନ ଅଗ୍ନି ଜଳେ ଘରେ,
ସ୍ତ୍ରୀ ବା ଉଷ୍ଣବାସେ ଅବା ସୂର୍ଯ୍ୟ କରେ । ୩ ।
ଯଉବନବତୀ ପ୍ରମଦା ଏ କାଳେ,
ମହା ଉପଭୋଗ୍ୟ କାଳ ମନେ ଭଲେ । ୪ ।

ଚନ୍ଦ୍ରିକା ସମ ଏ ଶୀତଳ ଚନ୍ଦନ,
ସୁରମ୍ୟ ପ୍ରାସାଦ ଘରେ ନା ଗୋ ମନ । ୫ ।
ଘନହିମଯୁକ୍ତ ଶୀତ ସମୀରଣ,
ନ କରେ ରଞ୍ଜନ ଆଜ ଜନମନ । ୬ ।

ସ୍ୱମର୍ଣି ପାଚେ ସୁଶୀତଳ ବାଟେ,
କ୍ଷଣାଙ୍କ କରଣେ ପାଣ୍ଡୁ ବର୍ଣ୍ଣ ସଟେ । ୭ ।
ତାରକାଭୂଷିତ ରଜନୀ ବଦନ,
ନ କରଇ ଗୈର ଏବେ ଜନମନ । ୮ ।

ତାମ୍ବୂଳ ସେବନେ, କୁସୁମର ମାଳା,
ସଜାଇଣ ଅଙ୍ଗେ ଏବେ ନବବାଳା । ୯ ।
ଅଗୁରୁ ବାସିତ ଶୟନ ମନ୍ଦିରେ,
ଚଳେ ରତ୍ତ ଆଣେ ପଡପାଶେ ଧୀରେ । ୧୦ ।

ମଦାଳସୀ ବାଳା ଶିଶିର ପ୍ରଭବେ,
ଅପରାଧୀ ପ୍ରିୟ ଦୋଷକୁ ନ ଭବେ । ୧୧ ।
ପାଶୋରନ୍ତି ମାନ ଏ ଶିଶିର ଯୋଗେ,
ଇଚ୍ଛିଣ ପ୍ରେମିକ ମଧୁର ସମ୍ଭୋଗେ । ୧୨ ।

କାମୁକ ଲଭଣ ସୁଦୀର୍ଘ ରଜନୀ,
ଉପଭୋଗେ ପ୍ରିୟା ହରଷେ ସଜନୀ । ୧୩ ।
କାମଶ୍ରମେ ବାଳା ନ ଗୃଲେ ବନ୍ଧନେ,
ଦୁର୍ବଳ ତା' ବକ୍ଷ ପ୍ରିୟ ଆଲିଙ୍ଗନେ ।୧୪।

ଶିଶିରେ ରମଣୀ ଭୂଷଣେ ସଜ୍ଜିତ,
କାଞ୍ଚୀଦାମେ ବାଳା ଉରଜ ପୀଡ଼ିତ । ୧୫ ।
କୌଷେୟ ବସନେ ବକ୍ଷ ପାଏ ଶୋଭା,
କେଶପାଶେ ପୁଷ୍ପମାଳ ମନଲୋଭା । ୧୬ ।

ଶିଶିର ନଶିରେ କାମୁକ ବଦନ,
ବାଳାକୁଚ କରି କୁଙ୍କୁମେ ରଞ୍ଜନ । ୧୭ ।
ମର୍ଦ୍ଦି ପ୍ରାଣ ଭରି ନର୍ଦ୍ଦୟ ହୃଦୟେ,
ଉରେ ଉରୁ ଜଡ଼ ନଦ୍ରାଗତ ଦ୍ୱୟେ । ୧୮ ।

ଆବର ଏ ଶୀତେ କାମାର୍ତ୍ତ ଯେ ଜାଣ,
କାମୋଦ୍ରେକକାରୀ ମଦ୍ୟ କରେ ପାନ । ୧୯ ।
ସୁପେୟ ମଦ୍ୟର ବନ୍ୟସ୍ତ-ସ୍ୱାଗରେ,
ଲଳନା ନିଃଶ୍ୱାସ ବାୟୁ ବହେ ଖରେ । ୨୦ ।

ପ୍ରେମିକ ନର୍ଦ୍ଦୟ ମର୍ଦ୍ଦନେ ବାଳାର,
କୁନ୍ତଳ କୁଞ୍ଚିତ କବା ପରକାର । ୨୧ ।
ଉପଭୋଗଚିହ୍ନ ଦେଖି ସାରା ଅଙ୍ଗେ,
ଲଜ୍ଜାଭରେ ବାଳା ଘୁଲେ ଆହ୍ଲା ରଙ୍ଗେ । ୨୨ ।

ଊଷା ଦେଖି କେବା ନିତମ୍ବିନୀ ନାରୀ,
ଗୃହ ମଧ୍ୟେ ଅଙ୍ଗଲାବଣ୍ୟ ତାହାର । ୨୩ ।
ଅଗୁରୁ ବାସିତ ବସ୍ତ୍ର ସୁମନେ,
ଛେଣୁଁ ତେଜ ଶଯ୍ୟା ଗୁଡ଼ାଇ ସଘନେ । ୨୪ ।

ଲକ୍ଷ୍ମୀ ସମ ଆହା ଗୃହବଧୂମାନେ,
ପ୍ରାତଃକର୍ମ ଅନ୍ତେ ପୁଲକିତ ପ୍ରାଣେ । ୨୫ ।
ସ୍ୱର୍ଣ୍ଣ ପଦ୍ମ କାନ୍ତି ଆରକ୍ତ ନୟନ,
କେଶ ଲୋଟୁଥାଇ କନ୍ଧରେ ବଦନ । ୨୬ ।

ଅବଳା କେ ଘନ ଜଘନର ଭାରେ,
ଆନତ ତାହାର ମଧ୍ୟଭାଗ ବାରେ । ୨୭ ।
ପୀନସ୍ତନ ଭରେ ଧୀରେ ଧୀରେ ଚାଲେ,
ସୁରତବିନ୍ୟାସ ତେଜଣ ଲଜ୍ଜାରେ । ୨୮ ।

ଉପଭୁକ୍ତା ନାରୀ ଅଙ୍ଗେ ନଖକ୍ଷତ,
ଅଧର ପଲ୍ଲବେ ଦନ୍ତକ୍ଷତ ଶତ । ୨୯ ।
ପ୍ରଭାତେ ବିଲୋକ ଏ କାମ ଲକ୍ଷଣ,
ହସି ହସି ପଦ କରେ ସଞ୍ଚଳନ । ୩୦ ।

ହୃଦୟେଶ୍ୱର ! ଏ ଶିଶିର ସମୟ,
ଧରା ଶାଳିଧାନ୍ୟ, ଇକ୍ଷୁରସ-ମୟ । ୩୧ ।
ଦର୍ପକ ଦର୍ପଟି ବଡ଼ ଭୟଙ୍କର,
ବିରହୀ ପକ୍ଷରେ ବଞ୍ଚିବା ଦୁଷ୍କର । ୩୨ ।

# ଷଷ୍ଠ ସର୍ଗ

## ବସନ୍ତ ବର୍ଣ୍ଣନ

(ରାଗ — ରସକୁଲ୍ୟା)

ସୁରକ୍ତ ଲଳସୀ ପରାଣ ନାଶେ,
ବାନ୍ଧ ଆଶେ ଯୋଦ୍ଧା ବସନ୍ତ ଆସେ,
ପ୍ରସ୍ଫୁଟିତ ଆମ୍ର ମୁକୁଳ ଶର,
ଅଳିପଂକ୍ତି ଧନୁଗୁଣ ଆବର,
ଆଗତ ମଧ୍ୟରେ ପ୍ରିୟା ଗୋ,
ଦେଖି ବସନ୍ତର ଏଣ୍ଟି ଯୋଦ୍ଧୃବେଶ
ବିଚଳିତ କାମିନୀଆ ଗୋ । ୧ ।

ସକଳ ସୁନ୍ଦର ବସନ୍ତେ ଆଜ,
ବୃକ୍ଷେ ପୁଷ୍ପ, ଜଳେ କମଳରାଜ,
ଅଙ୍ଗନା ପୀଡ଼ିତା ମଦନ-ବାଣେ,
ସୁଗନ୍ଧ ପବନ ମୋହେ ପରାଣେ,
ସାୟଂକାଳ ସୁଖକର ଗୋ,
ଦିବାଭାଗ ରମ୍ୟ ଆହା ଏ ବସନ୍ତେ
ସବୁ ସିନା ମନୋହର ଗୋ । ୨ ।

ସଜାଇବା ଆଶେ ସଭଙ୍କ ହସ୍ତେ,
ଋତୁରାଜ ଆସିଅଛି କ ସତେ,
ମନୋରମ ଦେଖ ଏ ପୁଷ୍କରଣୀ,
ମଣି ମେଖଳାରେ ମଣ୍ଡେ କାମିନୀ,
ଚତୁ ଶୋଭାପାଏ ଫୁଲେ,
ସୌଭାଗ୍ୟ ସଜ୍ଜାରେ ସମଳଙ୍କୃତ ଗୋ
ସକଳେ ବସନ୍ତ ଭୁଲେ । ୩ ।

କୁସୁମ୍ଭକୁସୁମ ଅରୁଣ ରାଗେ,
ମନୋହର ବାସ ମଣ୍ଡି ସରାଗେ,
ନିତମ୍ବଯୁଗ ଏ ରମଣୀ ବର,
ରକ୍ତାଭ କୁଙ୍କୁମେ କୁଚଯୁଗଳ,
ଧରଇ ଅପୂର୍ବ ଶିରୀ ଗୋ,
ଦେଖିଲେ ତରୁଣେ ପୁଲକ ଜାଗଇ
ଗାତ କରେ ଥର ଥର ଗୋ । ୪ ।

କର୍ଣ୍ଣିକାର କର୍ଣ୍ଣଯୁଗଳେ ଶୋଭେ,
ଘନକୃଷ୍ଣ କେଶ ମାନସ ମୋହେ,
ଖଚିତ ହୋଇଛି ଅଶୋକ ଫୁଲେ,
ନବମଲ୍ଲୀ ପୁଣ ଅଛି ତା ଭୁଲେ,
ଦଶଇ କେମନ୍ତ ଶୋଭା ଗୋ,
ମଧୁର ବସନ୍ତେ ଏ ମୋହନ ଛବି
ଆହା ଜନମନଲୋଭା ଗୋ । ୫ ।

କାମାତୁର ନରନିମ୍ନ ସକଳେ,
ପୀନସ୍ତନଶୋଭି ହୃଦସ୍ଥଳେ,
ଚନ୍ଦନ ଅଳକ୍ତ ମୁକ୍ତାହାର,
ବଳୟ କେୟୂର ଭୁଜଲତାର,
ଜଘନେ ମେଖଳା ଦାମ ଗୋ,
ବେଶଧାନ କରି ଯଉବନା ଦିଶେ
ମତେ କିବା ଶୋଭାଧାମ ଗୋ । ୬ ।

ବିଳାସିନୀ ବାଳା ହେମ କମଳ—
ବଦନେ ରଚିତ ପତ୍ର ସୁନ୍ଦର,
ତହିଁ ପରେ ସ୍ୱେଦବିନ୍ଦୁ ବିରାଜେ,
କି ସୁନ୍ଦର ଆହା ଦେଖି ସେ ସାଜେ,
ମନେ ମୋ ହୁଏ ପରତେ ଗୋ,
ରତ୍ନଜାଲ ମଧ୍ୟେ     ମୁକ୍ତାଜାଲ କିବା
ଖଚିତ ହୋଇଛି ସତେ ଗୋ । ୭ ।

ବସନ୍ତ ପ୍ରଭାବ ଦେଖ ସଖିରେ,
ପ୍ରିୟ ଥିଲେ ମୁଗ୍ଧା କାମିନୀ ଆଗେ,
ବିରହତାପିତା ପରସ୍ପ ବଶେ,
ମଦନ ସନ୍ତାପ ପାଇଛି କି ସେ,
ଉଚ୍ଛ୍ୱସିତ କଳେବର ଗୋ,
ରହି ରହି କ୍ଷଣେ     ପରକ୍ଷଣେ ପୁଣି
ଶିଥିଳ ହୁଏ ଆବର ଗୋ । ୮ ।

ଏକେ ତ ବସନ୍ତ ପ୍ରକୋପ ଟାଣ,
ତାର ସଙ୍ଗେ ପୁଣି ମଦନବାଣ,
ଦେଖ ଦେଖ ଏବେ ନାରୀ ଅବସ୍ଥା,
ପାଣ୍ଡୁବର୍ଣ୍ଣ ଅଙ୍ଗଲତିକା ତଥା,
ଅଳସେ ମରଇ ଯାଇ ଗୋ,
ଫୁଟି ଉଠେ ଅଙ୍ଗ ଲବଣ୍ୟ, ତରଙ୍ଗ
ସରୋବରରେ ଯଥା ଘୁଇ ଗୋ । ୯ ।

ରମଣୀ ଆପାଦମସ୍ତକେ ଆଜ,
ନାନା ରୂପେ ଖେଳେ ମଦନରାଜ,
ମଦିର ନୟନେ ଚଞ୍ଚଳ ପଣେ,
ଗଣ୍ଡେ ପାଣ୍ଡୁବର୍ଣ୍ଣେ, କୁଚେ କଠିନେ,
ନିମ୍ନ ନାଭି, କଟିଦେଶେ ଗୋ,
ସ୍ଥୂଳତା ଆଚରେ ଜଘନେ ତାହାର
କିବା ନବ ନବ ବେଶେ ଗୋ । ୧୦ ।

ଗଦଗଦ ମନ୍ଦମିଠା ବଚନ,
ପ୍ରମଦାର କରଅଛ ମଦନ,
ଜଟିଳ କଟାକ୍ଷ-ନୟନ-ଠାଣି,
ବନ୍ଧଛ ତା ସାଥେ କୃଶାଙ୍ଗୀ ଜାଣି,
ରମଣୀ ସର୍ବାଙ୍ଗେ ଆଜ ଗୋ,
ଏ ନବ ବସନ୍ତେ ନଦ୍ରା-ଜଡ଼ବତ
ଆଚରୁଛ କାମରାଜ ଗୋ । ୧୧ ।

ବିଳାସିନୀ ବାଳା ସେ ମଦାଳସୀ,
ମଧୁର ବସନ୍ତେ ଅଳପ ହସି,
ପ୍ରିୟଙ୍କୁ ପରାଗ ସୁରଭ ପୁଣ,
କୁଙ୍କୁମ ମୃଗନାଭି ସବର୍ଣ୍ଣ,
ମିଶାଇ ଚନ୍ଦନରସେ ଗୋ,
କୁଚ କୋକନଦ ମଣ୍ଡନ କରୁଛି
ଆତ୍ମା କ ନବ ହରଷେ ଗୋ । ୧୨ ।

କାମମଦେ ହୋଇ ଅଳସ-ଅଙ୍ଗୀ,
ତେଜ ଗରୁ ବାସ ଆଜ ବସଙ୍ଗୀ,
ଲକ୍ଷାରସେ ଯେଉଁ ବାସ ରଞ୍ଜିତ,
ସୁଗନ୍ଧ ଅଗୁରୁ ବାସେ ବାସିତ,
ସୂକ୍ଷ୍ମ ବାସ ଆଣି ଭବ ଗୋ,
ମଣ୍ଡେ ଅପଘନ ଏ ମଧୂ ବସନ୍ତେ
ପୁଲକତ ପ୍ରାଣେ ପର ଗୋ । ୧୩ ।

ରସ ନ-ବକୁଳ-ଝରିତ ମଦ୍ୟ,
ପାନ କରି ପ୍ରେମେ କୋକଳ ଅଦ୍ୟ,
ପ୍ରେମାସକ୍ତ ପ୍ରାଣେ ଚୁମ୍ବେ ପ୍ରିୟାରେ,
ଆନ ଦରେ ଅଳ ମତ୍ତ ହୁଆରେ,
ଗୁଣୁଗୁଣୁ ଛେ ଛନେ ଗୋ,
ଭ୍ରମର ସମୀପେ ଚାଟୁବାଣୀ କହ
ନାଚୁଥାଏ କୁତୂହଳେ । ୧୪ ।

ତାମ୍ର ବର୍ଣ୍ଣ ନବ ପଲ୍ଲବ ମାଳେ,
ଲମ୍ବିତ ଆନତ ଏ ସହକାରେ,
ଶାଖା'ରେ ତା ପୂର୍ଣ୍ଣ ମୁକୁଳରାଜି,
ବାୟୁ ଉଦ୍ଧୂନିତ ହେଉଣି ଆଜି,
ବସନ୍ତ-କୋପ-ପୀଡ଼ିତା ଗୋ,
ଯୁବତୀ ମାନସେ        ଜଗାଇ ପ୍ରଣୟ
କରେ ତାକୁ ଉତ୍କଣ୍ଠିତା ଗୋ । ୧୫ ।

ଅଶୋକ ନବୀନ ଦଳେ ଶୋଭିତ,
ପ୍ରବାଳ ବରଣ ପୁଷ୍ପେ ପୂରିତ,
ମୂର୍ତ୍ତିଁ ରକ୍ତ ଯା'ଏ ପୁଷ୍ପମଣ୍ଡିତ,
ଦେଖି ନେନେ ବିରହିଣୀର ଚିତ୍ତ,
ହୁଅଇ ଅଧୀର ସିନା ଗୋ,
ଏ ମଧୁ ବସନ୍ତେ        ମଧୁମୟ ଦୃଶ୍ୟ
ପ୍ରାଣବଲ୍ଲଭର ବିନା ଗୋ । ୧୬ ।

ବକୁଳେ ରସାଳ ଢଳେ ଶୋଭନ,
ମଉଅଳ ଚୁମ୍ବେ ତା'ର ବଦନ,
ମୃଦୁ ମନ୍ଦ ବାତେ ପଲ୍ଲବ ରାଜ,
ଦୋଳନ୍ତ କେସନ ଦେଖ ଗୋ ଆଜ,
ଦେଖି ଏ ଶୋଭା ସମ୍ପଦ ଗୋ,
କାମିନୀ ପରାଣେ ଜାଗେ କାମବୃତ୍ତି
ଆସଇ ତାର ବିପଦ ଗୋ ।୧୭।

ପ୍ରିୟତମା ମୁଖ କାନ୍ତି ସମାନ,
କାନ୍ତି ଧରେ କୁରୁବକ ପ୍ରମାଣ,
ଅନଙ୍ଗତମାୟୁ ସୁଷମା ତାର,
ଦର୍ଶକ ମାନସେ ଶଙ୍କା ଅପାର,
କହ ଅବା କାହା ମନ ଗୋ,
ମନମଥ ବାଣେ ନ ହୋଇବ ଘାର
ବିଲୋକ ଦୃଶ୍ୟ ଏସନ ଗୋ ।୧୮।

ଘୃତ ଅଗ୍ନି ସମୁଜ୍ଜ୍ୱଳ ବର୍ଣ୍ଣନ,
କାନ୍ତି ଧରି ଏହି ପଲାଶ ବନ,
ପୁଷ୍ପଗୁଚ୍ଛରେ ଅବନତ ସତତ,
ମନ୍ଦ ସମୀରଣେ ଦୋଳେ ନିରତ,
ସମଗ୍ର ଏ ବନସ୍ଥଳୀ ଗୋ,
ରକ୍ତ-ବାସ-ପରି- ହିତା ନବବଧୂ
ଶୋଭାକୁ ଯାଉଛି ବଳି ଗୋ । ୧୯ ।

କିଂଶୁକ କୁସୁମ କି ମନୋହର,
ଶୁକ ମୁଖ ଛବି ସମ ସୁନ୍ଦର,
କର୍ଣ୍ଣିକାର ଜ୍ୱାଳା ଦିଏ ଯୁବକେ,
କୋକିଳ ବେଦନା ଜଗାଏ ବକ୍ଷେ,
ଆଘାତପ୍ରାପ୍ତ ବିରହୀ ଗୋ,
ମୃତବ୍ୟକ୍ତି ପରେ ଖଡ଼ଗ ପ୍ରହାର
ସମ ମୁଁ ଏହା ମଣଇ ଗୋ । ୨୦ ।

ପିକ କୁହୁ ତାନ କି ମନୋହର,
ଆନନ୍ଦବର୍ଷୀ ସେ ପ୍ରେମାଙ୍କକର,
ମଦମତ୍ତ ଅଳି ମଧୁଗୁଞ୍ଜନେ,
ସ୍ୱଭାବତଃ ଲଜ୍ଜାଶୀଳାର ମନେ,
ପୁଲକ ଜଗାଏ ହେଳେ ଗୋ,
ନ ପାରେ ସହି ସେ ମନମଥ ଚାପ
ଏ ମଧୁ ବସନ୍ତ ବେଳେ ଗୋ । ୨୧ ।

ମାହାର ପବନ ନାଚି ଗୋ ସହି,
ତରୁଡଗେ ପିକ ଝଙ୍କାରେ ରହି,
ମୁକୁଳ ଶୋଭିତ ଏ ସହକାର,
ଶାଖାମାନ କମ୍ପେ ସମୀରେ ତା'ର,
ପାଗଳ କରଇ ନରେ ଗୋ,
ହରଇ ସବୁର ମାନସ ସତତ
ଧାରଇ ମଦନ-ଶରେ ଗୋ । ୨୨ ।

ନବୀନ ବଧୂର ଭ୍ରମ ସୁନ୍ଦର
ସମ କୁନ୍ଦ ଫୁଲ କି ମନୋହର,
ଘପ୍ରିମଯ୍ୟୁ ହୋଇ ଉଦ୍ୟାନ ଶୋହେ,
ମୁନି ମନ ସୁଦ୍ଧା କ୍ଷଣକେ ମୋହେ,
କାମାନ୍ଧ ଯୁବକ ମନ ତୋ,
ନ ହେବ କି ଘାରି          ଉକ୍ଷତେ ତା ହେଶ
ପଡ଼ିଲେ ବାରେ ନୟନ ଗୋ । ୨୩ ।

ବାଳା ଅଙ୍ଗ ଯଷ୍ଟି ଆଜ ବସନ୍ତେ,
ମନମଥ ବାଣେ ଶିଥିଳ ସତେ,
ନିତମ୍ବ କାଞ୍ଚୀ ତା ବସ୍ତ୍ରସ୍ତ୍ରେ ଦୋଳେ,
ହାର ଲମ୍ବେ କୁଚ ଯୁଗଳେ ଖେଳେ,
ହୁଏ ଏବେ ଆନମନା,
ପୁରୁଷ ମାନସ          ନିମିଷେ ଟଳଇ
ଦର୍ଶନେ ହୁଅଇ ବଣା । ୨୪ ।

ଗିରି ଅପରୂପ ଦର୍ଶନେ ମନ,
ବିମୋହିତ ଆଜ ହୁଏ ବହନ,
ପ୍ରାନ୍ତ ଭାଗ ଶୋହେ ନାନା ସୁମନେ,
ସାନୁଦେଶ ପିକ ସ୍ୱରେ ସଘନେ,
ବିକମ୍ପିତ ହୁଏ ଆଜି,
ଶିଳାଜତୁ ମଧୁ ଗନ୍ଧେ ଆମୋଦିତ
ଏବେ ଶିଳାପଟରାଜି । ୨୫ ।

ଦୌର୍ଭାଗ୍ୟ, ସୁଖକର ଏହି ବସନ୍ତେ,
ବିରହ ପରାଣେ ଘାରେ ଜ୍ୱଳନ୍ତେ
କମ୍ପେ ଅଙ୍ଗ ଆମ୍ର ମୁକୁଳେ ଚୁମ୍ବି,
ପାଗଳ ହୁଏ ସେ ସୌରଭ ପାଇ,
ବସି ସେ ବିଜନ ବନେ,
ବ୍ୟଥିତ ପରାଣେ ବୁହାଏ ନୟନୁଁ
ଅଶ୍ରୁଧାର ଅନୁକ୍ଷଣେ । ୨୬ ।

ଅଭିମାନିନୀର ମାନ ଉପରେ
ବସନ୍ତ ପକାଏ ବଜ୍ର ସତ୍ୱରେ,
ମତ୍ତ ଅଳି, ପିକ ମୃଦୁ ଝଙ୍କାର,
ପୁଣି ପ୍ରସ୍ଫୁଟିତ ଯେ କର୍ଣ୍ଣିକାର,
କି ଅବା ମଦନ ବାଣ ଗୋ,
ମାନିନୀ ପରାଣେ କାମନା ଜଗାଏ
ଭଙ୍ଗିବାକୁ ମନଠାଣ ଗୋ । ୨୭ ।

କିଂଶୁକ କୁସୁମ କୋଦଣ୍ଡ ଯାର,
ଧନୁଗୁଣ ଅଳି ପଂକ୍ତି ବିସ୍ତର,
ଅକଳଙ୍କ ଚନ୍ଦ୍ର ଯା ଶୁକ୍ଳଛତ୍ର
ମଳୟ ମାତଙ୍ଗ ଯା'ର ସର୍ବତ୍ର
କୋକିଳ ଯାହାର ଭାଟ ଗୋ,
ଆମ୍ର ମୁକୁଳ ଯା' ଶାୟକ ସେ ମଧୁ
ଅଟେ ସିନା ଋତୁରାଟ ଗୋ । ୨୮ ।

---

# ଋତୁ ସଂହାରମ୍

## ପ୍ରଥମଃ ସର୍ଗଃ

### ଗ୍ରୀଷ୍ମବର୍ଣ୍ଣନମ୍

ପ୍ରଚଣ୍ଡ-ସୂର୍ଯ୍ୟଃ ସ୍ପୃହଣୀୟ-ଚନ୍ଦ୍ରମାଃ
ସଦାବଗାହକ୍ଷତ-ବାରି-ସଞ୍ଚୟଃ ।
ଦିନାନ୍ତରମ୍ୟୋଽଭ୍ୟୁପଶାନ୍ତମନ୍ମଥୋ
ନିଦାଘ-କାଳୋଽୟମୁପାଗତଃ ପ୍ରିୟେ ! । ୧ ।

ନିଶାଃ ଶଶାଙ୍କକ୍ଷତନୀଳରାଜୟଃ
କ୍ୱଚିଦ୍ ବିଚିତ୍ରଂ ଜଳଯନ୍ତ୍ରମନ୍ଦିରମ୍ ।
ମଣିପ୍ରକାରାଃ ସରସଞ୍ଚ ଚନ୍ଦନଂ
ଶୁଚୌ ପ୍ରିୟେ ! ଯାନ୍ତି ଜନସ୍ୟ ସେବ୍ୟତାମ୍ । ୨ ।

ସୁବାସିତଂ ହର୍ମ୍ୟତଳଂ ମନୋହରଂ
ପ୍ରିୟାମୁଖୋଚ୍ଛ୍ୱାସବିକମ୍ପିତଂ ମଧୁ ।
ସୁତନ୍ତ୍ରି-ଗୀତଂ ମଦନସ୍ୟ ଦୀପନଂ
ଶୁଚୌ ନିଶୀଥେଽନୁଭବନ୍ତି କାମିନଃ । ୩ ।

ନିତମ୍ବବିମ୍ବୈଃ ସଦୁକୂଳମେଖଳୈଃ
ସ୍ତନୈଃ ସହାରାଭରଣୈଃ ସଚନ୍ଦନୈଃ ।
ଶିରୋରୁହୈଃ ସ୍ନାନକଷାୟ-ବାସିତୈଃ
ସ୍ତ୍ରିୟୋ ନିଦାଘଂ ଶମୟନ୍ତି କାମିନାମ୍ । ୪ ।

ନିତାନ୍ତଲାକ୍ଷାରସରାଗରଞ୍ଜିତୈ
ର୍ନିତମ୍ବିନୀନାଞ୍ଚରଣୈଃ ସନୂପୁରୈଃ ।
ପଦେ ପଦେ ହଂସରୁତାନୁକାରିଭି—
ର୍ଜନସ୍ୟ ଚିତ୍ତଂ କ୍ରିୟତେ ସମନ୍ମଥମ୍ । ୫ ।

ପୟୋଧରାଶ୍ଚନ୍ଦନପଙ୍କ-ଚର୍ଚ୍ଚିତା-
ସ୍ତୁଷାର-ଗୌରାର୍ପିତହାର-ଶେଖରାଃ ।
ନିତମ୍ବଦେଶାଶ୍ଚ ସହେମମେଖଳାଃ
ପ୍ରକୁର୍ବତେ କସ୍ୟ ମନୋ ନ ସୋତ୍ସୁକମ୍ । ୬ ।

ସମୁଦ୍‌ଗତ-ସ୍ୱେଦଚିତାଙ୍ଗ-ସନ୍ଧୟୋ
ବିମୁଚ୍ୟ ବାସାଂସି ଗୁରୂଣି ସାମ୍ପ୍ରତମ୍ ।
ସ୍ତନେଷୁ ତନ୍ୱଂଶୁକମୁନ୍ନତସ୍ତନା
ନିବେଶୟନ୍ତି ପ୍ରମଦାଃ ସୟୌବନାଃ । ୭ ।

ସଚନ୍ଦନାମ୍ବୁବ୍ୟଜନୋଦ୍ଭବାନିଳୈଃ
ସହାରୟଷ୍ଟିସ୍ତନମଣ୍ଡଳାର୍ପଣୈଃ ।
ସବଲ୍ଲକୀ କାକଳୀଗୀତନିସ୍ୱନୈ—
ର୍ବିବୋଧ୍ୟତେ ସୁପ୍ତ ଇବାଦ୍ୟ ମନ୍ମଥଃ । ୮ ।

ସିତେଷୁ ହର୍ମ୍ୟେଷୁ ନିଶାସୁ ଯୋଷିତାଂ
ସୁଖପ୍ରସୁପ୍ତାନି ମୁଖାନି ଚନ୍ଦ୍ରମାଃ ।
ବିଲୋକ୍ୟ ନୂନଂ ଭୃଶମୁତ୍ସୁକଶ୍ଚିରଂ
ନିଶାକ୍ଷୟେ ଯାତି ହ୍ରିୟେବ ପାଣ୍ଡୁତାମ୍ । ୯ ।

ଅସହ୍ୟବାତୋଦ୍ଧତରେଣୁମଣ୍ଡଳା
ପ୍ରଚଣ୍ଡ-ସୂର୍ଯ୍ୟାତପ-ତାପିତା ମହୀ ।
ନ ଶକ୍ୟତେ ଦ୍ରଷ୍ଟୁମପି ପ୍ରବାସିଭିଃ
ପ୍ରିୟାବିୟୋଗାନଳଦଗ୍‌ଧମାନସୈଃ । ୧୦ ।

ମୃଗାଃ ପ୍ରଚଣ୍ଡାତପତାପିତା ଭୃଶଂ
ତୃଷା ମହତ୍ୟା ପରିଶୁଷ୍କ-ତାଳବଃ ।
ବନାନ୍ତରେ ତୋୟମିତି ପ୍ରଧାବିତା
ନିରୀକ୍ଷ୍ୟ ଭିନ୍ନାଞ୍ଜନସନ୍ନିଭନ୍ନଭଃ । ୧୧ ।

ସବିଭ୍ରମୈଃ ସସ୍ମିତଜିହ୍ମ ବୀକ୍ଷିତୈ
ର୍ବିଳାସବତ୍ୟୋ ମନସି ପ୍ରବାସିନାମ୍ ।
ଅନଙ୍ଗ-ସନ୍ଦୀପନମାଶୁ କୁର୍ବତେ
ଯଥା ପ୍ରଦୋଷାଃ ଶଶିଚାରୁଭୂଷଣାଃ । ୧୨ ।

ରବେର୍ମୟୂଖୈରଭିତାପିତୋ ଭୃଶଂ
ବିଦହ୍ୟମାନଃ ପଥି ତପ୍ତପାଂଶୁଭିଃ ।
ଅବାଙ୍‌ମୁଖୋଽଜିହ୍ମଗତିଃ ଶ୍ୱସନ୍‌ମୁହୁଃ
ଫଣୀ ମୟୂରସ୍ୟ ତଳେ ନିଷୀଦତି । ୧୩ ।

ତୃଷା ମହତ୍ୟା ହତବିକ୍ରମୋଦ୍ୟମଃ
ଶ୍ୱସନ୍ ମୁହୁର୍ଦ୍ଦୂର-ବିଦାରିତାନନଃ ।
ନ ହନ୍ତ୍ୟଦୂରେଽପି ଗଜାନ ମୃଗେଶ୍ୱରୋ
ବିଲୋଲଜିହ୍ୱଶ୍ଚଳିତାଗ୍ରକେଶରଃ । ୧୪ ।

ବିଶୁଷ୍କକଣ୍ଠାହୃତଶୀକରାମ୍ଭସେ ।
ଗଭସ୍ତିଭିର୍ଭାନୁମତୋଽନୁ ତାପିତାଃ ।
ପ୍ରବୃଦ୍ଧତୃଷ୍ଣୋପହତା ଜଲାର୍ଥିନୋ
ନ ଦନ୍ତିନଃ କେଶରିଣୋଽପି ବିଭ୍ୟତି । ୧୫ ।

ହୁତାଗ୍ନିକଲ୍ପୈଃ ସବିତୁର୍ଗଭସ୍ତିଭିଃ
କଲାପିନଃ କ୍ଲାନ୍ତଶରୀରଚେତନାଃ
ନ ଭୋଗିନଂ ଘ୍ନନ୍ତି ସମୀପବର୍ତ୍ତିନଂ
କଲାପଚକ୍ରେଷୁ ନିବେଶିତାନନମ୍ । ୧୬ ।

ସଭଦ୍ରମୁସ୍ତଂ ପରିଶୁଷ୍କକର୍ଦ୍ଦମଂ
ସରଃ ଖନନ୍ନାୟତପୋତ୍ରମଣ୍ଡଲୈଃ ।
ରବେର୍ମୟୂଖୈରଭିତାପିତୋ ଭୃଶଂ
ବରାହଯୂଥୋ ବିଶତୀବ ଭୂତଲମ୍ । ୧୭ ।

ବିବସ୍ୱତା ତୀକ୍ଷ୍ଣତରାଂଶୁମାଲିନା
ସପଙ୍କତୋୟାତ୍ ସରସୋଽଭିତାପିତଃ ।
ଉତ୍ପ୍ଲୁତ୍ୟ ଭେକସ୍ତୃଷିତସ୍ୟ ଭୋଗିନଃ
ଫଣାତପତ୍ରସ୍ୟ ତଲେ ନିଷୀଦତି । ୧୮ ।

ସମୁଦ୍ଧୃତାଶେଷମୃଣାଲଜାଲକଂ
ବିପନ୍ନମୀନଂ ଦ୍ରୁତଭୀତସାରସମ୍ ।
ପରସ୍ପରୋତ୍ପୀଡନସଂହତୈର୍ଗଜୈଃ
କୃତଂ ସରଃ ସାନ୍ଦ୍ରବିମର୍ଦ୍ଦକର୍ଦ୍ଦମମ୍ । ୧୯ ।

ରଭସପ୍ରଭୋର୍ଜିନଶିରୋମଣିପ୍ରଭେ
ଭୂଲୋକକଳ୍ପାଦପଲ୍ଲାଡ଼ମାର୍ଜ୍ଜିତଃ ।
ଦଷାଗ୍ନିସୂର୍ଯ୍ୟାତପତାପିତଃ ଫଣୀ
ନ ହନ୍ତି ମଣ୍ଡୂକକୁଳଂ ତୃଷାକୁଳଃ । ୨୦ ।

ସଫେନଲୋଳାପ୍ଲୁତବନ୍ଧସମ୍ପୁଟଂ
ଦ୍ୱିନଃସୃତାଲେହିତଜିହ୍ୱମୁନ୍ମୁଖମ୍ ।
ତୃଷାକୁଳଂ ନିଃସୃତମଦ୍ରିଗହ୍ୱରା
ଦବେକ୍ଷମାଣଂ ମହିଷୀକୁଳଂ ଜଳମ୍ । ୨୧ ।

ପଟୁତରଦବଦାହୋଚ୍ଛୁଷ୍କଶସ୍ୟପ୍ରରୋହାଃ
ପରୁଷପବନବେଗାତ୍ କ୍ଷିପ୍ତସଂଶୁଷ୍କପର୍ଣ୍ଣାଃ ।
ଦିନକରପରିତାପକ୍ଷୀଣତୋୟାଃ ସମନ୍ତାଦ
ବିଦଧତି ଭୟମୁଚ୍ଚୈର୍ବୀକ୍ଷ୍ୟମାଣା ବନାନ୍ତାଃ । ୨୨ ।

ଶ୍ୱସିତି ବିହଗବର୍ଗଃ ଶୀର୍ଣ୍ଣପର୍ଣ୍ଣଦ୍ରୁମସ୍ଥଃ ।
କପିକୁଳମୁପଯାତି କ୍ଲାନ୍ତମଦ୍ରେର୍ନିକୁଞ୍ଜମ୍ ।
ଭ୍ରମତି ଗବୟଯୂଥଃ ସର୍ବତଃ ତୋୟମିଚ୍ଛନ୍
ଶରଭକୁଳମଜିହ୍ମଂ ପ୍ରୋଦ୍ଧରତ୍ୟମ୍ବୁ କୂପାତ୍ । ୨୩ ।

ବିକଚନବକୁସୁମ୍ଭସ୍ୱଚ୍ଛସିନ୍ଦୂରଭାସା
ପ୍ରବଳପବନବେଗୋଦ୍ଭୂତବେଗେନ ତୂର୍ଣ୍ଣମ୍ ।
ତଟବିଟପଲତାଗ୍ରାଲିଙ୍ଗନବ୍ୟାକୁଳେନ
ଦିଶି ଦିଶି ପରିଦଗ୍ଧା ଭୂମୟଃ ପାବକେନ । ୨୪ ।

ଜ୍ୱଳତି ପବନବୃଦ୍ଧଃ ପର୍ବତାନାଂ ଦରୀଷୁ
ସ୍ଫୁଟତି ପଟୁନିନାଦୈଃ ଶୁଷ୍କବଂଶସ୍ଥଳୀଷୁ ।
ପ୍ରସରତି ତୃଣମଧ୍ୟଂ ଲବ୍‌ଧବୃଦ୍ଧିଃ କ୍ଷଣେନ
ଗ୍ଲପୟତି ମୃଗବର୍ଗଂ ପ୍ରାନ୍ତଲଗ୍ନୋ ଦବାଗ୍ନିଃ । ୨୫ ।

ବହୁତର ଇବ ଜାତଃ ଶାଲ୍ମଳୀନାଂ ବନେଷୁ
ସ୍ଫୁରତି କନକଗୌରଃ କୋଟରେଷୁ ଦ୍ରୁମାଣାମ୍ ।
ପରିଣତଦଳଶାଖାନୁତ୍ପତନ୍ ପ୍ରାଂଶୁବୃକ୍ଷାନ୍
ଭ୍ରମତି ପବନଧୂତଃ ସର୍ବତୋଽଗ୍ନିର୍ବନାନ୍ତେ । ୨୬ ।

ଗଜଗବୟମୃଗେନ୍ଦ୍ରା ବହ୍ନିସନ୍ତପ୍ତଦେହାଃ
ସୁହୃଦ ଇବ ସମେତା ଦ୍ୱନ୍ଦ୍ୱଭାବଂ ବିହାୟ ।
ହୁତବହପରିଖେଦାଦାଶୁ ନିର୍ଗତ୍ୟ କକ୍ଷାଦ୍
ବିପୁଳପୁଳିନଦେଶା ନିମ୍ନଗାଂ ସଂବିଶନ୍ତି । ୨୭ ।

କମଳବନଚିତାମ୍ବୁଃ ପାଟଳାମୋଦରମ୍ୟଃ
ସୁଖସଲିଳନିଷେକଃ ସେବ୍ୟଚନ୍ଦ୍ରାଂଶୁହାରଃ ।
ବ୍ରଜତୁ ତବ ନିଦାଘଃ କାମିନୀଭିଃ ସମେତୋ
ନିଶି ସୁଲଳିତଗୀତେ ହର୍ମ୍ୟପୃଷ୍ଠେ ସୁଖେନ । ୨୮ ।

## ଦ୍ୱିତୀୟଃ ସର୍ଗଃ

### ବର୍ଷା ବର୍ଣ୍ଣନମ୍

ସ-ଶୀକରାମ୍ଭୋଧରମତ୍ତକୁଞ୍ଜର—
ସ୍ତଡିତ୍ପତାକୋଽଶନିଶବ୍ଦମର୍ଦ୍ଦଳଃ ।
ସମାଗତୋ ରାଜବଦୁଦ୍ଧତଦ୍ୟୁତି—
ର୍ଘନାଗମଃ କାମିଜନପ୍ରିୟଃ ପ୍ରିୟେ ।୧।

ନିତାନ୍ତନୀଳୋତ୍ପଳପତ୍ରକାନ୍ତିଭିଃ
କ୍ୱଚିତ୍ ପ୍ରଭିନ୍ନାଞ୍ଜନରାଶିସନ୍ନିଭୈଃ ।
କ୍ୱଚିତ୍ ସଗର୍ଭ-ପ୍ରମଦା-ସ୍ତନପ୍ରଭୈଃ
ସମାଚିତଂ ବ୍ୟୋମଘନୈଃ ସମନ୍ତତଃ ।୨।

ତୃଷାକୁଳୈଶ୍ଚାତକପକ୍ଷିଣାଂ କୁଳୈଃ
ପ୍ରୟାଚିତାସ୍ତୋୟଭରାବଲମ୍ବିନଃ ।
ପ୍ରୟାନ୍ତି ମନ୍ଦଂ ବହୁଧାରବର୍ଷିଣୋ
ବଳାହକାଃ ଶ୍ରୋତ୍ରମନୋହରସ୍ୱନାଃ ।୩।

ବଳାହକାଶ୍ଚାଶନିଶବ୍ଦମର୍ଦ୍ଦଳାଃ
ସୁରେନ୍ଦ୍ରଚାପଂ ଦଧତସ୍ତଡିଦ୍ଗୁଣମ୍ ।
ସୁତୀକ୍ଷ୍ଣଧାରାପତନୋଗ୍ରସାୟକୈ—
ସ୍ତୁଦନ୍ତି ଚେତଃ ପ୍ରସଭଂ ପ୍ରବାସିନାମ୍ ।୪।

ପ୍ରଭିନ୍ନବୈଦୂର୍ଯ୍ୟନିଭୈସ୍ତୃଣାଙ୍କୁରୈଃ
ସମାଚିତା ପ୍ରୋତ୍ଥିତକନ୍ଦଳୀ-ଦଳୈଃ ।
ବିଭାତି ଶୁକ୍ଳେତରରତ୍ନଭୂଷିତା
ବରାଙ୍ଗନେବ କ୍ଷିତିରିନ୍ଦ୍ରଗୋପକୈଃ । ୫ ।

ସଦା ମନୋଜ୍ଞଂ ସ୍ୱନଦୁତ୍ସବୋତ୍ସୁକଂ
ବିକୀର୍ଣ୍ଣ ବିସ୍ତୀର୍ଣ୍ଣକଳାପଶୋଭିତମ୍ ।
ସସମ୍ଭ୍ରମାଲିଙ୍ଗନଚୁମ୍ବନାକୁଳଂ
ପ୍ରବୃତ୍ତ-ନୃତ୍ୟଂ କୁଳମଦ୍ୟ ବର୍ହିଣାମ୍ । ୬ ।

ନିପାତୟନ୍ତ୍ୟଃ ପରିତସ୍ତଟଦ୍ରୁମାନ୍
ପ୍ରବୃଦ୍ଧବେଗୈଃ ସଲିଳୈରନିର୍ମଳୈଃ ।
ସ୍ତ୍ରିୟଂ ସୁଦୁଷ୍ଟା ଇବ ଜାତବିଭ୍ରମାଃ
ପ୍ରୟାନ୍ତି ନଦ୍ୟସ୍ତ୍ୱରିତଂ ପୟୋନିଧିମ୍ । ୭ ।

ତୃଣୋତ୍କରୈରୁଦ୍‌ଗତକୋମଳାଙ୍କୁରୈ—
ର୍ବିଚିତ୍ରନୀଳୈର୍ହରିଣୀ-ମୁଖ-କ୍ଷତୈଃ ।
ବନାନି ବୈନ୍ଧ୍ୟାନି ହରନ୍ତି ମାନସଂ
ବିଭୂଷିତାନ୍ୟୁଦ୍‌ଗତ-ପଲ୍ଲବୈର୍ଦ୍ରୁମୈଃ । ୮ ।।

ବିଲୋଲନେତ୍ରୋତ୍ପଳଶୋଭିତାନନୈ—
ର୍ମୃଗୈଃ ସମନ୍ତାଦୁପଜାତସାଧ୍ୱସୈଃ ।
ସମାଚିତା ସୈକତିନୀ ବନସ୍ଥଳୀ
ସମୁତ୍ସୁକତ୍ୱଂ ପ୍ରକରୋତି ଚେତସଃ । ୯ ।।

ଅଭୀକ୍ଷଣମୁଚ୍ଚୈର୍ଧ୍ୱନତା ପୟୋମୁଚା
ଘନାନ୍ଧକାରୀକୃତଶର୍ବରୀଷ୍ୱପି ।
ତଡ଼ିତ୍‌ପ୍ରଭା-ଦର୍ଶିତ-ମାର୍ଗ ଭୂମୟଃ
ପ୍ରୟାନ୍ତି ରାଗାଦଭିସାରିକାଃ ସ୍ତ୍ରିୟଃ। ୧୦ ।

ପୟୋଧରୈର୍ଭୀମ-ଗଭୀର-ନିଃସ୍ୱନୈ-
ସ୍ତଡିଦ୍ଭିରୁଦ୍‌ବେଜିତ-ଚେତସୋ ଭୃଶମ୍ ।
କୃତାପରାଧାନପି ଯୋଷିତଃ ପ୍ରିୟାନ୍
ପରିଷ୍ୱଜନ୍ତେ ଶୟନେ ନିରନ୍ତରମ । ୧୧ ।

ବିଲୋଚନେନ୍ଦୀବରବାରିବିନ୍ଦୁଭି—
ର୍ନିଷିକ୍ତବିମ୍ବାଧରଚାରୁପଲ୍ଲବାଃ ।
ନିରସ୍ତମାଲ୍ୟାଭରଣାନୁଲେପନାଃ
ସ୍ଥିତା ନିରାଶାଃ ପ୍ରମଦାଃ ପ୍ରବାସିନାମ୍ । ୧୨ ।

ବିପାଣ୍ଡୁରଂ କୀଟରଜସ୍ତୃଣାନ୍ୱିତଂ
ଭୁଜଙ୍ଗବଦ୍‌ବକ୍ରଗତି-ପ୍ରସର୍ପିତମ୍ ।
ସସାଧ୍ୱସୈର୍ଭେକକୁଳୈର୍ନିରୀକ୍ଷିତଂ
ପ୍ରୟାତି ନିମ୍ନାଭିମୁଖଂ ନବୋଦକମ୍ । ୧୩ ।

ବିପତ୍ରପୁଷ୍ପାଂ ନଳିନୀଂ ସମୁତ୍ସୁକା
ବିହାୟ ଭୃଙ୍ଗାଃ ଶ୍ରୁତିହାରିନିଃସ୍ୱନାଃ ।
ପତନ୍ତି ମୂଢ଼ାଃ ଶିଖିନାଂ ପ୍ରନୃତ୍ୟତାଂ
କଳାପଚକ୍ରେଷୁ ନବୋତ୍ପଳାଶୟା । ୧୪ ।

ବନଦ୍ୱିପାନାଂ ନବବାରିଦସ୍ୱନୈ-
ର୍ମଦାନ୍ୱିତାନାଂ ଧ୍ୱନତାଂ ମୁହୁର୍ମୁହୁଃ ।
କପୋଳଦେଶା ବିମଳୋତ୍ପଳପ୍ରଭାଃ
ସଭୃଙ୍ଗଯୂଥୈର୍ମଦବାରିଭିଶ୍ଚିତାଃ । ୧୫ ।

ସିତୋତ୍ପଳାଭାମ୍ବୁଦଚୁମ୍ବିତୋପଳାଃ
ସମାଚିତାଃ ପ୍ରସ୍ରବଣୈଃ ସମନ୍ତତଃ ।
ପ୍ରବୃତ୍ତନୃତ୍ୟୈଃ ଶିଖିଭିଃ ସମାକୁଳାଃ
ସମୁତ୍ସୁକତ୍ୱଂ ଜନୟନ୍ତି ଭୂଧରାଃ । ୧୬ ।

କଦମ୍ବସର୍ଜ୍ଜାର୍ଜ୍ଜୁନକେତକୀବନଂ
ପ୍ରକମ୍ପୟଂସ୍ତତ୍‌କୁସୁମାଧିବାସିତଃ ।
ସ-ଶୀକରାମ୍ଭୋଧରସଙ୍ଗଶୀତଳଃ
ସମୀରଣଃ କଂ ନ କରୋତି ସୋତ୍ସୁକମ । ୧୭ ।

ଶିରୋରୁହୈଃ ଶ୍ରୋଣିତଟାବଲମ୍ବିଭିଃ
କୃତାବତଂସୈଃ କୁସୁମୈଃ ସୁଗନ୍ଧିଭିଃ ।
ସ୍ତନୈଃ ସହାରୈର୍ବଦନୈଃ ସସୀଧୁଭିଃ
ସ୍ତ୍ରିୟୋ ରତିଂ ସଞ୍ଜନୟନ୍ତି କାମିନାମ୍ । ୧୮ ।

ତଡ଼ିଲ୍ଲତା-ଶକ୍ରଧନୁ-ର୍ବିଭୂଷିତାଃ
ପୟୋଧରାସ୍ତୋୟଭରାବଲମ୍ବିନଃ ।
ସ୍ତ୍ରିୟଶ୍ଚ କାଞ୍ଚୀମଣିକୁଣ୍ଡଳୋଜ୍ଜ୍ୱଳା
ହରନ୍ତି ଚେତୋ ଯୁଗପତ୍ ପ୍ରବାସିନାମ । ୧୯ ।

ମାଳାଃ କଦମ୍ବ-ନବ-କେଶର-କେତକୀଭି
ରାୟୋଜିତାଃ ଶିରସି ବିଭ୍ରତି ଯୋଷିତୋଽଦ୍ୟ
କର୍ଣ୍ଣାନ୍ତରେଷୁ କକୁଭ-ଦ୍ରୁମ-ମଞ୍ଜରୀଭି-
ରିଚ୍ଛାନୁକୂଳ-ରଚିତାନବତଂସକାଂଶ୍ଚ । ୨୦ ।

କାଳାଗୁରୁ-ପ୍ରଚୁର-ଚନ୍ଦନ-ଚର୍ଚ୍ଚିତାଙ୍ଗ୍ୟଃ
ପୁଷ୍ପାବତଂସ-ସୁରଭୀକୃତ-କେଶପାଶାଃ ।
ଶ୍ରୁତ୍ୱା ଧ୍ୱନିଂ ଜଳମ୍ମୁଚଂ ତ୍ୱରିତଂ ପ୍ରଦୋଷେ
ଶଯ୍ୟାଗୃହଂ ଗୁରୁଗୃହାତ୍ ପ୍ରବିଶନ୍ତି ନାର୍ଯ୍ୟଃ । ୨୧ ।

କୁବଳୟଦଳନୀଳୈରୁନ୍ନତୈସ୍ତୋୟ-ନମ୍ରୈ-
ର୍ମୃଦୁପବନବିଧୂତୈର୍ମନ୍ଦମନ୍ଦଂ ଚଳଦ୍ଭିଃ
ଅପହୃତମିବ ଚେତସ୍ତୋୟଦୈଃ ସେନ୍ଦ୍ରଚାପୈଃ
ପଥିକଜନବଧୂନାଂ ତଦ୍ବିୟୋଗାକୁଳାନାମ ।୨୨

ମୁଦିତ ଇବ କଦମ୍ବୈର୍ଜାତପୁଷ୍ପୈଃ ସମନ୍ତାତ୍
ପବନଚଳିତଶାଖୈଃ ଶାଖିଭିର୍ନୃତ୍ୟତୀବ ।
ହସିତମିବ ବିଧତ୍ତେ ସୂଚିଭିଃ କେତକୀନାଂ
ନବସଳିଳନିଷେକଚ୍ଛିନ୍ନତାପୋ ବନାନ୍ତଃ । ୨୩

ଶିରସି ବକୁଳମାଳାଂ ମାଳତୀଭିଃ ସମେତାଂ
ବିକଶିତନବପୁଷ୍ପୈର୍ୟୂଥିକାକୁଟ୍ମଳୈଶ୍ଚ ।
ବିକଚନବକଦମ୍ବୈଃ କର୍ଣ୍ଣପୂରଂ ବଧୂନାଂ
ରଚୟତି ଜଳଦୌଘଃ କାନ୍ତବତ୍ କାଳ ଏଷଃ ।୨୪

ଦଧତି ବରକୁଚାଗ୍ରୈରୁନ୍ନତୈର୍ହାରଯଷ୍ଟିଂ
ପ୍ରତନୁସିତଦୁକୂଳାନ୍ୟାୟତୈଃ ଶ୍ରୋଣିବିମ୍ବୈଃ ।
ନବଜଳକଣସେକାଦୁଦ୍‌ଗତାଂ ରୋମରାଜିଂ
ଲଳିତବଳିବିଭଙ୍ଗୈର୍ମଧ୍ୟଦେଶୈଶ୍ଚ ନାର୍ଯ୍ୟଃ । ୨୫

ନବଜଳକଣସଙ୍ଗାଚ୍ଛୀତତାମାଦଧାନଃ
କୁସୁମଭରନତାନାଂ ଲାସକଃ ପାଦପାନାମ୍ ।
ଜନିତରୁଚିରଗନ୍ଧଃ କେତକୀନାଂ ରଜୋଭିଃ
ପରିହରତି ନଭସ୍ୱାନ୍ ପ୍ରୋଷିତାନାଂ ମନାଂସି ।୨୬

ଜଳଭରବିନତାନାମାଶ୍ରୟୋଽସ୍ମାକମୁଚ୍ଚୈ-
ରୟମିତି ଜଳସେକୈସ୍ତୋୟଦାସ୍ତୋୟନମ୍ରାଃ ।
ଅତିଶୟପରୁଷାଭିର୍ଗ୍ରୀଷ୍ମବହ୍ନେଃ ଶିଖାଭିଃ
ସମୁପଜନିତତାପଂ ହ୍ଲାଦୟନ୍ତୀବ ବିନ୍ଧ୍ୟମ୍ ।୨୭ ।

ବହୁଗୁଣରମଣୀୟଃ କାମିନୀଚିତ୍ତହାରୀ
ତରୁବିଟପଲତାନାଂ ବାନ୍ଧବୋ ନିର୍ବିକାରଃ
ଜଳଦସମୟ ଏଷଃ ପ୍ରାଣିନାଂ ପ୍ରାଣଭୂତୋ
ଦିଶତୁ ତବ ହିତାନି ପ୍ରାୟଶୋ ବାଞ୍ଛିତାନି । ୨୮ ।

---

# ତୃତୀୟଃ ସର୍ଗଃ

## ଶରଦ୍‌ବର୍ଣ୍ଣନମ୍‌

କାଶାଂଶୁକା ବିକଚ- ପଦ୍ମମନୋଜ୍ଞବକ୍ତ୍ରା
ସୋନ୍ମାଦ-ହଂସରବନୂପୁରନାଦରମ୍ୟା ।
ଆପକ୍ୱ-ଶାଳିରୁଚିର ତନୁଗାତ୍ରୟଷ୍ଟିଃ
ପ୍ରାପ୍ତା ଶରନ୍ନବବଧୂରିବ ରୂପରମ୍ୟା । ୧ ।

କାଶୈର୍ମହୀ ଶିଶିରଦୀଧିତିନା ରଜନ୍ୟୋ
ହଂସୈର୍ଜଳାନି ସରିତାଂ କୁମୁଦୈଃ ସରାଂସି ।
ସପ୍ତଚ୍ଛଦୈଃ କୁସୁମଭାରନତୈର୍ବନାନ୍ତାଃ
ଶୁକ୍ଳୀକୃତାନ୍ୟୁପବନାନି ଚ ମାଳତୀଭିଃ । ୨ ।

ଚଞ୍ଚନ୍ମନୋଜ୍ଞଶଫରୀରସନାକଳାପାଃ
ପର୍ଯ୍ୟନ୍ତସଂସ୍ଥିତସିତାଣ୍ଡଜପଂକ୍ତିହାରାଃ ।
ନଦ୍ୟୋ ବିଶାଳପୁଳିନାନ୍ତନିତମ୍ବବିମ୍ବା
ମନ୍ଦଂ ପ୍ରୟାନ୍ତି ସମଦାଃ ପ୍ରମଦା ଇବାଦ୍ୟ । ୩ ।

ବ୍ୟୋମ କ୍ୱଚିଦ୍ରଜତ-ଶଙ୍ଖ-ମୃଣାଳ-ଗୌରୈ
ସ୍ତ୍ୟକ୍ତାମ୍ବୁଭିର୍ଲଘୁତୟା ଶତଶଃ ପ୍ରୟାତୈଃ ।
ସଂଲକ୍ଷ୍ୟତେ ପବନ-ବେଗଚଳୈଃ ପୟୋଦୈଃ
ରାଜେବ ଚାମର-ବରୈରୁପବୀଜ୍ୟମାନଃ । ୪ ।

ଭିନ୍ନାଞ୍ଜନ-ପ୍ରଚୟ- କାନ୍ତି ନଭୋ ମନୋଜ୍ଞଂ
ବନ୍ଧୂକ-ପୁଷ୍ପରଚିତାରୁଣିତା ଚ ଭୂମିଃ ।
ବପ୍ରାଶ୍ଚ ପକ୍ୱକଳମାବୃତ-ଭୂମି-ଭାଗାଃ
ପ୍ରୋତ୍କଣ୍ଠୟନ୍ତି ନ ମନୋ ଭୁବି କସ୍ୟ ଯୂନଃ । ୫ ।

ମନ୍ଦାନିଳାକୁଳିତ-ଚାରୁତରାଗ୍ରଶାଖଃ
ପୁଷ୍ପୋଦ୍‌ଗମ-ପ୍ରଚୟ-କୋମଳ-ପଲ୍ଲବାଗ୍ରଃ ।
ମତ୍ତ-ଦ୍ୱିରେଫ-ପରିପୀତ-ମଧୁ- ପ୍ରସେକ-
ଶ୍ଚିତ୍ତଂ ବିଦାରୟତି କସ୍ୟ ନ କୋବିଦାରଃ । ୬ ।

ତାରାଗଣ-ପ୍ରବର-ଭୂଷଣମୁଦ୍‌ବହନ୍ତୀ
ମେଘାବରୋଧ-ପରିମୁକ୍ତ-ଶଶାଙ୍କ-ବକ୍‌ତ୍ରା ।
ଜ୍ୟୋତ୍ସ୍ନା-ଦୁକୂଳମମଳଂ ରଜନୀ ଦଧାନା
ବୃଦ୍ଧିଂ ପ୍ରୟାତ୍ୟନୁଦିନଂ ପ୍ରମଦେବ ବାଳା । ୭ ।

କାରଣ୍ଡବାନନ-ବିଘଟ୍ଟିତ-ବୀଚି-ମାଳାଃ
କାଦମ୍ବ-ସାରସକୁଳାକୁଳତୀର-ଦେଶାଃ
କୁର୍ବନ୍ତି ହଂସବିରୁତୈଃ ପରିତୋ ଜନସ୍ୟ
ପ୍ରୀତିଂ ପରଂ କମଳରେଣୁବୃତାସ୍ତଟିନ୍ୟଃ । ୮ ।

ନେତ୍ରୋତ୍ସବୋ ହୃଦୟ-ହାର-ମରୀଚ-ମାଳଃ
ପ୍ରହ୍ଲାଦକଃ ଶିଶିରଶୀକର-ବାରବର୍ଷୀ ।
ପତ୍ୟୁର୍ବିୟୋଗ-ବିଷ-ଦଗ୍ଧ ଶରକ୍ଷତାନାଂ
ଚନ୍ଦ୍ରୋ ଦହତ୍ୟତିତରାଂ ତନୁମଙ୍ଗନାନାମ୍ । ୯ ।

ଆକମ୍ପୟନ୍ ଫଳଭରାନତଶାଳି-ଜାଳା-
ନ୍ୟାନର୍ତ୍ତୟଂସ୍ତରୁବରାନ୍ କୁସୁମାବନମ୍ରାନ୍ ।
ପ୍ରୋତ୍ଫୁଲ୍ଲପଙ୍କଜବନାଂ ନଳିନୀଂ ବିଧୂନ୍ୱନ୍
ଯୂନାଂ ମନଶ୍ଚଳୟତି ପ୍ରସଭଂ ନଭସ୍ୱାନ୍ । ୧୦ ।

ସୋନ୍ମାଦ-ହଂସ-ମିଥୁନୈରୁପଶୋଭିତାନି
ସ୍ୱଚ୍ଛ-ପ୍ରଫୁଲ୍ଲ-କମଳୋତ୍ପଳ-ଭୂଷିତାନି ।
ମନ୍ଦ-ପ୍ରଭାତ-ପବନୋଦ୍‌ଗତ-ବୀଚିମାଳା-
ନ୍ୟୁତ୍କଣ୍ଠୟନ୍ତି ସହସା ହୃଦୟଂ ସରାଂସି । ୧୧ ।

ନଷ୍ଟଂ ଧନୁର୍ବଳଭିଦୋ ଜଳଦୋଦରେଷୁ
ସୌଦାମନୀ ସ୍ଫୁରତି ନାଦ୍ୟ ବିୟତ୍-ପତାକା ।
ଧୁନ୍ୱନ୍ତି ପକ୍ଷପବନୈର୍ନ ନଭୋ ବଳାକାଃ
ପଶ୍ୟନ୍ତି ନୋନ୍ନତମୁଖା ଗଗନଂ ମୟୂରାଃ । ୧୨ ।

ନୃତ୍ୟପ୍ରୟୋଗ-ରହିତାନ୍ ଶିଖିନୋ ବିହାୟ
ହଂସାନୁପୈତି ମଦନୋ ମଧୁର-ପ୍ରଗୀତାନ୍
ମୁକ୍ତ୍ୱା କଦମ୍ବ-କୁଟଜାର୍ଜ୍ଜୁନ-ସର୍ଜ୍ଜ-ନୀପାନ୍
ସପ୍ତଚ୍ଛଦାନୁପଗତା କୁସୁମୋଦ୍‌ଗମଶ୍ରୀଃ । ୧୩ ।

ସେଫାଳିକା-କୁସୁମଗନ୍ଧ-ମନୋହରାଣି
ସ୍ୱସ୍ଥ-ସ୍ଥିତାଣ୍ଡଜ-କୁଳପ୍ରତିନାଦିତାନି ।
ପର୍ଯ୍ୟନ୍ତ-ସଂସ୍ଥିତ -ମୃଗୀ-ନୟନୋତ୍ପଳାନି
ପ୍ରୋତ୍କଣ୍ଠୟନ୍ତ୍ୟୁପବନାନି ମନାଂସି ପୁଂସାମ୍ । ୧୪ ।

କଲ୍ହାର-ପଦ୍ମ-କୁମୁଦାନି ମୁହୁର୍ବିଧୁନ୍ୱଂ
ସ୍ତତ୍ସଙ୍ଗମାଦଧିକଶୀତଳତାମୁପେତଃ ।
ଉତ୍କଣ୍ଠୟତ୍ୟତିତରାଂ ପବନଃ ପ୍ରଭାତେ
ପତ୍ରାନ୍ତ-ଲଗ୍ନ-ତୁଷାରାମ୍ବୁବିଧୂୟମାନଃ । ୧୫ ।

ସମ୍ପନ୍ନଶାଳି-ନିଚୟାବୃତ-ଭୂତଳାନି
ସ୍ୱସ୍ଥ-ସ୍ଥିତ-ପ୍ରଚୁର-ଗୋକୁଳ-ଶୋଭିତାନି ।
ହଂସୈଃ ସସାରସକୁଳୈଃ ପ୍ରତିନାଦିତାନି
ସୀମାନ୍ତରାଣି ଜନୟନ୍ତି ନୃଣାଂ ପ୍ରମୋଦମ୍ । ୧୬

ହଂସୈର୍ଜିତା ସୁଲଳିତା ଗତିରଙ୍ଗନାନା-
ମମ୍ଭୋରୁହୈର୍ବିକସିତୈର୍ମୁଖଚନ୍ଦ୍ରକାନ୍ତିଃ ।
ନୀଳୋତ୍ପଳୈର୍ମଦକଳାନି ବିଲୋକିତାନି
ଭ୍ରୂବିଭ୍ରମାଶ୍ଚ ରୁଚିରାସ୍ତନୁଭିସ୍ତରଙ୍ଗୈଃ । ୧୭ ।

ଶ୍ୟାମ ଲତାଃ କୁସୁମଭାର-ନତ-ପ୍ରବାଳାଃ
ସ୍ତ୍ରୀଣାଂ ହରନ୍ତି ଧୃତ-ଭୂଷଣ-ବାହୁ-କାନ୍ତିମ୍
ଦନ୍ତାବଭାସ-ବିଶଦ-ସ୍ମିତ-ଚନ୍ଦ୍ର-କାନ୍ତିଂ
କଙ୍କେଳି-ପୁଷ୍ପ-ରୁଚିରା ନବମାଳତୀ ଚ । ୧୮ ।

କେଶାନ୍ନିତାନ୍ତ-ଘନନୀଳ-ବିକୁଞ୍ଚିତାଗ୍ରା-
ନାପୂରୟନ୍ତି ବନିତା ନବମାଳତୀଭିଃ ।
କର୍ଣ୍ଣେଷୁ ଚ ପ୍ରବର-କାଞ୍ଚନ-କୁଣ୍ଡଳେଷୁ
ନୀଳୋତ୍ପଳାନି ବିବିଧାନି ନିବେଶୟନ୍ତି । ୧୯ ।

ହାରୈଃ ସଚନ୍ଦନରସୈଃ ସ୍ତନମଣ୍ଡଳାନି
ଶ୍ରୋଣୀତଟଂ ସୁବିପୁଳଂ ରସନା-କଳାପୈଃ ।
ପାଦାମ୍ବୁଜାନି କଳନୂପୁର-ଶେଖରୈଶ୍ଚ
ନାର୍ଯ୍ୟଃ ପ୍ରହୃଷ୍ଟମନସୋଽଦ୍ୟ ବିଭୂଷୟନ୍ତି । ୨୦ ।

ସ୍ଫୁଟ-କୁମୁଦଚିତାନାଂ ରାଜହଂସାଶ୍ରିତାନାଂ
ମରକତ-ମଣିଭାସା ବାରିଣା ଭୂଷିତାନାମ୍ ।
ଶ୍ରିୟମତିଶୟରୂପାଂ ବ୍ୟୋମ ତୋୟାଶୟାନାଂ
ବହତି ବିଗତମେଘଂ ଚନ୍ଦ୍ରତାରାବକୀର୍ଣ୍ଣମ୍ । ୨୧ ।

ଶରଦି କୁମୁଦସଙ୍ଗାଦ୍‌ବାୟବୋ ବାନ୍ତି ଶୀତା
ବିଗତଜଳଦବୃନ୍ଦା ଦିଗ୍‌ବିଭାଗା ମନୋଜ୍ଞାଃ ।
ବିଗତକଳୁଷମମ୍ଭଃ ଶ୍ୟାନପଙ୍କା ଧରିତ୍ରୀ
ବିମଳକିରଣଚନ୍ଦ୍ରଂ ବ୍ୟୋମ ତାରାବିଚିତ୍ରମ୍ । ୨୨ ।

ଦିବସ କର-ମୟୂଖୈର୍ବୋଧ୍ୟମାନଂ ପ୍ରଭାତେ
ବର-ଯୁବତିମୁଖାଭଂ ପଙ୍କଜଂ ଜୃମ୍ଭତେଽଦ୍ୟ ।
କୁମୁଦମପି ଗତେଽସ୍ତଂ ଲୀୟତେ ଚନ୍ଦ୍ରବିମ୍ବେ
ହସିତମିବ ବଧୂନାଂ ପ୍ରୋଷିତେଷୁ ପ୍ରିୟେଷୁ । ୨୩ ।

ଅସିତ-ନୟନ-ଲକ୍ଷ୍ମୀଂ ଲକ୍ଷୟିତ୍ୱୋତ୍ପଳେଷୁ
କ୍ୱଣିତକନକକାଞ୍ଚୀଂ ମତ୍ତହଂସସ୍ୱନେଷୁ ।
ଅଧରରୁଚିରଶୋଭାଂ ବନ୍ଧୁଜୀବେ ପ୍ରିୟାଣାଂ
ପଥିକଜନ ଇଦାନୀଂ ରୋଦିତି ଭ୍ରାନ୍ତଚିତ୍ତଃ । ୨୪ ।

ସ୍ତ୍ରୀଣାଂ ବିହାୟ ବଦନେଷୁ ଶଶାଙ୍କଲକ୍ଷ୍ମୀଂ
କାମଞ୍ଚ ହଂସବଚନଂ ମଣିନୂପୁରେଷୁ ।
ବନ୍ଧୂକକାନ୍ତିମଧରେଷୁ ମନୋହରେଷୁ
କ୍ୱାପି ପ୍ରୟାତି ସୁଭଗା ଶରଦାଗମଶ୍ରୀଃ । ୨୫ ।

ବିକଚକମଳବକ୍ତ୍ରା ଫୁଲ୍ଲନୀଳୋତ୍ପଳାକ୍ଷୀ
ବିକସିତନବକାଶଶ୍ୱେତବାସୋ ବସାନା ।
କୁମୁଦରୁଚିରକାନ୍ତିଃ କାମିନୀବୋନ୍ମଦେୟଂ
ପ୍ରତିଦିଶତୁ ଶରଦ୍‌ବଶ୍ଚେତସଃ ପ୍ରୀତିମଗ୍ର୍ୟାମ । ୨୬ ।

———

# ଚତୁର୍ଥଃ ସର୍ଗଃ

## ହେମନ୍ତବର୍ଣ୍ଣନମ୍

ନବପ୍ରବାଳୋଦ୍‌ଗମଶସ୍ୟରମ୍ୟଃ
ପ୍ରଫୁଲ୍ଲଲୋଧ୍ରଃ ପରିପକ୍ୱଶାଳିଃ ।
ବିଲୀନପଦ୍ମଃ ପ୍ରପତତ୍ତୁଷାରୋ
ହେମନ୍ତକାଳଃ ସମୁପାଗତୋଽୟମ୍ । ୧ ।

ମନୋହରୈଃ କୁଙ୍କୁମରାଗରକ୍ତୈ-
ସ୍ତୁଷାରକୁନ୍ଦେନ୍ଦୁନିଭୈଶ୍ଚ ହାରୈଃ ।
ବିଳାସିନୀନାଂ ସ୍ତନଶାଳିନୀନାଂ
ନାଲଂକ୍ରିୟନ୍ତେ ସ୍ତନମଣ୍ଡଳାନି । ୨ ।

ନ ବାହୁଯୁଗ୍ମେଷୁ ବିଳାସିନୀନାଂ
ପ୍ରୟାନ୍ତି ସଙ୍ଗଂ ବଳୟାଙ୍ଗଦାନି ।
ନିତମ୍ବବିମ୍ବେଷୁ ନବଂ ଦୁକୂଳଂ
ତନ୍ୱଂଶୁକଂ ପୀନପୟୋଧରେଷୁ । ୩ ।

କାଞ୍ଚୀଗୁଣୈଃ କାଞ୍ଚନରତ୍ନଚିତ୍ରୈ-
ର୍ନୋ ଭୂଷୟନ୍ତି ପ୍ରମଦା ନିତମ୍ବମ୍ ।
ନ ନୂପୁରୈର୍ହଂସରୁତଂ ଭଜଦ୍ଭିଃ
ପାଦାମ୍ବୁଜାନ୍ୟମ୍ବୁଜକାନ୍ତିଭାଞ୍ଜି । ୪ ।

ଗାତ୍ରାଣି କାଳୀୟକଚର୍ଚ୍ଚିତାନି
ସପତ୍ରଲେଖାନି ମୁଖାମ୍ବୁଜାନି ।
ଶିରାଂସି କାଳାଗୁରୁଧୂପିତାନି
କୁର୍ବନ୍ତି ନାର୍ଯ୍ୟଃ ସୁରତୋତ୍ସବାୟ । ୫ ।

ରତିଶ୍ରମକ୍ଷାମ-ବିପାଣ୍ଡୁବକ୍ତ୍ରାଃ
ସମ୍ପ୍ରାପ୍ତହର୍ଷାଭ୍ୟୁଦୟାସ୍ତରୁଣ୍ୟଃ ।
ହସନ୍ତି ନୋଚ୍ଚୈର୍ଦ୍ଦଶନାଗ୍ରଭିନ୍ନାନ୍
ପ୍ରପୀଡ୍ୟମାନାନଧରାନବେକ୍ଷ୍ୟ । ୬ ।

ପୀନସ୍ତନୋରଃସ୍ଥଳଭାଗଶୋଭା-
ମାସାଦ୍ୟ ତତ୍ପୀଡ଼ନ-ଜାତ-ଖେଦଃ ।
ତୃଣାଗ୍ରଲଗ୍ନୈସ୍ତୁହିନୈଃ ପତଦ୍ଭି—
ରୁଦନ୍ତିବୋଷସି ଶୀତକାଳଃ । ୭ ।

ପ୍ରଭୂତଶାଳିପ୍ରସବୈଶ୍ଚିତାନି
ମୃଗାଙ୍ଗନାୟୂଥବିଭୂଷିତାନି ।
ମନୋହରକ୍ରୌଞ୍ଚନିନାଦିତାନି
ସୀମାନ୍ତରାଣ୍ୟୁତ୍ସୁକୟନ୍ତି ଚେତଃ । ୮ ।

ପ୍ରଫୁଲ୍ଲନୀଳୋତ୍ପଳଶୋଭିତାନି
ସୋନ୍ମାଦ-କାଦମ୍ବବିଭୂଷିତାନି ।
ପ୍ରସନ୍ନତୋୟାନି ସୁଶୀତଳାନି
ସରାଂସି ଚେତାଂସି ହରନ୍ତି ପୁଂସାମ୍ । ୯

ପାକଂ ବ୍ରଜନ୍ତୀ ହିମଜାତଶୀତୈ—
ଆଧୂୟମାନା ସତତଂ ମରୁଦ୍ଭିଃ ।
ପ୍ରିୟେ ! ପ୍ରିୟଙ୍ଗୁଃ ପ୍ରିୟବିପ୍ରଯୁକ୍ତା
ବିପାଣ୍ଡୁତାଂ ଯାତି ବିଳାସିନୀବ । ୧୦ ।

ପୁଷ୍ପାସବାମୋଦ-ସୁଗନ୍ଧବକ୍ତ୍ରୋ
ନିଃଶ୍ୱାସ-ବାତୈଃ ସୁରଭିକୃତାଙ୍ଗଃ ।
ପରସ୍ପରାଙ୍ଗ-ବ୍ୟତିଷକ୍ତ-ଶାୟୀ
ଶେତେ ଜନଃ କାମରସାନୁବିଦ୍ଧଃ । ୧୧ ।

ଦନ୍ତଚ୍ଛଦୈଃ ସବ୍ରଣ-ଦନ୍ତ-ଚିହ୍ନୈଃ
ସ୍ତନୈଶ୍ଚ ପାଣ୍ୟଗ୍ରକୃତାଭିଲେଖୈଃ ।
ସଂସୂଚ୍ୟତେ ନିର୍ଦ୍ଦୟମଙ୍ଗନାନାଂ
ରତୋପଯୋଗୋ ନବଯୌବନାନାମ୍ । ୧୨ ।

କାଶ୍ଚିଦ୍‌ବିଭୂଷୟତି ଦର୍ପଣସକ୍ତହସ୍ତା
ବାଳାତପେଷୁ ବନିତା ବଦନାରବିନ୍ଦମ୍ ।
ଦନ୍ତଚ୍ଛଦଂ ପ୍ରିୟତମେନ ନିପୀତ-ସାରଂ
ଦନ୍ତାଗ୍ରଭିନ୍ନମବକୃଷ୍ୟ ନିରୀକ୍ଷ୍ୟତେ ଚ । ୧୩ ।

ଅନ୍ୟା ପ୍ରକାମ-ସୁରତ-ଶ୍ରମ-ଖିନ୍ନ ଦେହା
ରାତ୍ରି-ପ୍ରଜାଗର-ବିପାଟଳ-ନେତ୍ର-ପଦ୍ମା ।
ସ୍ରସ୍ତାଂସଦେଶ-ଲୁଳିତାକୁଳ-କେଶ-ପାଶା
ନିଦ୍ରାଂ ପ୍ରୟାତି ମୃଦୁ-ସୂର୍ଯ୍ୟକରାଭିତପ୍ତା । ୧୪ ।

ନିର୍ମାଲ୍ୟ-ଦାମ ପରିମୁକ୍ତ-ମନୋଜ୍ଞ-ଗନ୍ଧଂ
ମୂର୍ଦ୍ଧ୍ନୋଽପନୀୟ ଘନ-ନୀଳ-ଶିରୋରୁହାନ୍ତାଃ ।
ପୀନୋନ୍ନତ-ସ୍ତନ-ଭରାନତ-ଗାତ୍ର-ଯଷ୍ଟ୍ୟଃ
କୁର୍ବନ୍ତି କେଶରଚନାମପରାସ୍ତରୁଣ୍ୟଃ । ୧୫ ।

ଅନ୍ୟା ପ୍ରିୟେଣ ପରିଭୁକ୍ତମବେକ୍ଷ୍ୟ ଗାତ୍ରଂ
ହର୍ଷାନ୍ୱିତା ବିରଚିତାଧରଚାରୁ-ଶୋଭା ।
କୂର୍ପାସକଂ ପରିଦଧାତି ନଖକ୍ଷତାଙ୍ଗୀ
ବ୍ୟାଲମ୍ବି-ନୀଳ-ଲଳିତାଳକ-କୁଞ୍ଚିତାକ୍ଷୀ । ୧୬ ।

ଅନ୍ୟାଶ୍ଚିରଂ ସୁରତକେଳିପରିଶ୍ରମେଣ
ଖେଦଂ ଗତାଃ ପ୍ରଶିଥିଳୀକୃତଗାତ୍ରଯଷ୍ଟ୍ୟଃ ।
ସଂହୃଷ୍ୟମାଣପୁଲକୋରୁପୟୋଧରାନ୍ତା
ଅଭ୍ୟଞ୍ଜନଂ ବିଦଧତି ପ୍ରମଦାଃ ସୁଶୋଭାଃ । ୧୭ ।

ବହୁଗୁଣରମଣୀୟୋ ଯୋଷିତାଂ ଚିତ୍ତହାରୀ
ପରିଣତବହୁଶାଳିବ୍ୟାକୁଳଗ୍ରାମସୀମା ।
ସତତମତିମନୋଜ୍ଞଃ କ୍ରୌଞ୍ଚମାଳାପରୀତଃ
ପ୍ରଦିଶତୁ ହିମଯୁକ୍ତଃ କାଳ ଏଷଃ ସୁଖଂ ବଃ । ୧୮ ।

---

# ପଞ୍ଚମ ସର୍ଗଃ

## ଶିଶିରବର୍ଣ୍ଣନମ୍

ପ୍ରରୂଢ଼ଶାଲ୍ୟଂଶୁଚୟୈର୍ମନୋହରଂ
କ୍ୱଚିତ୍ ସ୍ଥିତକ୍ରୌଞ୍ଚନିନାଦରାଜିତମ୍ ।
ପ୍ରକାମକାମଂ ପ୍ରମଦାଜନପ୍ରିୟଂ
ବରୋରୁ କାଳଂ ଶିଶିରାହ୍ୱୟଂ ଶୃଣୁ । ୧ ।

ନିରୁଦ୍ଧବାତାୟନମନ୍ଦିରୋଦରଂ
ହୁତାଶନୋ ଭାନୁମତୋ ଗଭସ୍ତୟଃ ।
ଗୁରୂଣି ବାସାଂସ୍ୟବଳାଃ ସଯୌବନାଃ
ପ୍ରୟାନ୍ତି କାଳେଽତ୍ର ଜନସ୍ୟ ସେବ୍ୟତାମ୍ । ୨ ।

ନ ଚନ୍ଦନଂ ଚନ୍ଦ୍ରମରୀଚିଶୀତଳଂ
ନ ହର୍ମ୍ୟପୃଷ୍ଠଂ ଶରଦିନ୍ଦୁନିର୍ମଳମ୍ ।
ନ ବାୟବଃ ସାନ୍ଦ୍ରତୁଷାରଶୀତଳା
ଜନସ୍ୟ ଚିତ୍ତଂ ରମୟନ୍ତି ସାମ୍ପ୍ରତମ୍ । ୩ ।

ତୁଷାରସଂଘାତନିପାତଶୀତଳାଃ
ଶଶାଙ୍କଭାଭିଃ ଶିଶିରୀକୃତାଃ ପୁନଃ
ବିପାଣ୍ଡୁତାରାଗଣଚାରୁଭୂଷିତା
ଜନସ୍ୟ ସେବ୍ୟା ନ ଭବନ୍ତି ରାତ୍ରୟଃ । ୪ ।

ଗୃହୀତତାମ୍ବୂଳବିଲେପନସ୍ରଜଃ
ପୁଷ୍ପାସବାମୋଦିତବକ୍ତ୍ରପଙ୍କଜାଃ ।
ପ୍ରକାମକାଳାଗୁରୁଧୂପବାସିତଂ
ବିଶନ୍ତି ଶଯ୍ୟାଗୃହମୁତ୍ସୁକାଃ ସ୍ତ୍ରିୟଃ । ୫ ।

କୃତାପରାଧାନ୍ ବହୁଶୋଽପି ତର୍ଜିତାନ୍
ସବେପଥୂନ୍ ସାଧ୍ୱସଲୁପ୍ତଚେତସଃ ।
ନିରୀକ୍ଷ୍ୟ ଭର୍ତ୍ତୄନ୍ ସୁରତାଭିଳାଷିଣଃ
ସ୍ତ୍ରିୟୋଽପରାଧାନ୍ ସମଦା ବିସସ୍ମରୁଃ । ୬ ।

ପ୍ରକାମକାମୈର୍ଯୁବଭିଃ ସୁନିର୍ଦ୍ଦୟଂ
ନିଶାସୁ ଦୀର୍ଘାସ୍ୱଭିରାମିତା ଭୃଶମ୍ ।
ଭ୍ରମନ୍ତି ମନ୍ଦଂ ଶ୍ରମଖେଦିତୋରବଃ
କ୍ଷପାବସାନେ ନବଯୌବନାଃ ସ୍ତ୍ରିୟଃ । ୭ ।

ମନୋଜ୍ଞ-କୂର୍ପାସକ-ପୀଡ଼ିତ-ସ୍ତନାଃ
ସରାଗ-କୌଷେୟକ-ଭୂଷିତୋରବଃ ।
ନିବେଶିତାନ୍ତଃ କୁସୁମୈଃ ଶିରୋରୁହୈ—
ର୍ବିଭୂଷୟନ୍ତୀବ ହିମାଗମଂ ସ୍ତ୍ରିୟଃ । ୮ ।

ପୟୋଧରୈଃ କୁଙ୍କୁମରାଗପିଞ୍ଜରୈଃ
ସୁଖୋପସେବୈର୍ନବଯୌବନୋଷ୍ମଭିଃ ।
ବିଳାସିନୀଭିଃ ପରିପୀଡ଼ିତୋରସଃ
ସ୍ୱପନ୍ତି ଶୀତଂ ପରିଭୂୟ କାମିନଃ । ୯ ।

ସୁଗନ୍ଧି-ନିଃଶ୍ୱାସ-ବିକମ୍ପିତୋତ୍ପଳଂ
ମନୋହରଂ କାମ-ରତି-ପ୍ରବୋଧକମ୍ ।
ନିଶାସୁ ହୃଷ୍ଟାଃ ସହ କାମିଭିଃ ସ୍ତ୍ରିୟଃ
ପିବନ୍ତି ମଦ୍ୟଂ ମଦନାୟମୁତ୍ତମମ୍ । ୧୦ ।

ଅପଗତମଦରାଗା ଯୋଷିଦେକା ପ୍ରଭାତେ
କୃତନିବିଡକୁଚାଗ୍ରା ପତ୍ୟୁରାଲିଙ୍ଗନେନ ।
ପ୍ରିୟତମପରିଭୁକ୍ତଂ ବୀକ୍ଷମାଣା ସ୍ୱଦେହଂ
ବ୍ରଜତି ଶୟନବାସାଦ୍‌ବାସମନ୍ୟଂହସନ୍ତୀ । ୧୧ ।

ଅଗୁରୁସୁରଭିଧୂପାମୋଦିତଂ କେଶପାଶଂ
ଗଳିତକୁସୁମମାଳଂ ତନ୍ୱତୀ କୁଞ୍ଚିତାଗ୍ରମ ।
ତ୍ୟଜତି ଗୁରୁନିତମ୍ବା ନିମ୍ନମଧ୍ୟାବସାନା
ହ୍ୟୁଷସି ଶୟନମନ୍ୟା କାମିନୀ ଚାରୁଶୋଭା । ୧୨ ।

କନକ-କମଳ-କାନ୍ତୈଃ ସଦ୍ୟ ଏବାମ୍ବୁଧୌତୈଃ
ଶ୍ରବଣତଟ-ନିଷକ୍ତୈଃ ପାଟଳୋପାନ୍ତ-ନେତ୍ରୈଃ ।
ଉଷସି ବଦନବିମ୍ବୈରଂସ-ସଂସକ୍ତ-କେଶୈଃ
ଶ୍ରିୟ ଇବ ଗୃହମଧ୍ୟେ ସଂସ୍ଥିତା ଯୋଷିତୋଽଦ୍ୟ । ୧୩ ।

ପୃଥୂଜଘନଭରାର୍ତ୍ତାଃ କଞ୍ଚିଦାନମ୍ର-ମଧ୍ୟାଃ
ସ୍ତନଭରପରିଖେଦାନ୍ମନ୍ଦମନ୍ଦଂ ବ୍ରଜନ୍ତ୍ୟଃ ।
ସୁରତ-ସମୟବେଶଂ ନୈଶମାଶୁ ପ୍ରହାୟ
ଦଧତି ଦିବସଯୋଗ୍ୟଂ ବେଶମନ୍ୟାସ୍ତରୁଣ୍ୟଃ । ୧୪ ।

ନଖପଦଚିତଭାଗାନ୍ ବୀକ୍ଷମାଣାଃ ସ୍ତନାନ୍ତା—
ନଧରକିଶଳୟାଗ୍ରଂ ଦନ୍ତଭିନ୍ନଂ ସ୍ପୃଶନ୍ତ୍ୟଃ ।
ଅଭିମତରସମେତଂ ନନ୍ଦୟନ୍ତ୍ୟସ୍ତରୁଣ୍ୟଃ
ସବିତୁରୁଦୟକାଳେ ଭୂଷୟନ୍ତ୍ୟାନନାନି । ୧୫ ।

ପ୍ରଚୁରଗୁଡ଼ବିକାରଃ ସ୍ୱାଦୁଶାଳୀକ୍ଷୁରମ୍ୟଃ
ପ୍ରବଳସୁରତକେଳିର୍ଜାତକନ୍ଦର୍ପଦର୍ପଃ ।
ପ୍ରିୟଜନରହିତାନାଂ ଚିତ୍ତସନ୍ତାପହେତୁଃ
ଶିଶିରସମୟ ଏଷ ଶ୍ରେୟସେ ବୋଽସ୍ତୁ ନିତ୍ୟମ୍ । ୧୬

---

# ଷଷ୍ଠଃ ସର୍ଗଃ

## ବସନ୍ତବର୍ଣ୍ଣନମ୍

ପ୍ରଫୁଲ୍ଲ-ଚୂତାଙ୍କୁର-ତୀକ୍ଷ୍ଣ-ସାୟକୋ
ଦ୍ୱିରେଫ-ମାଳା-ବିଲସଦ୍ଧନୁର୍ଗୁଣଃ ।
ମନାଂସି ବେଦ୍ଧୁଂ ସୁରତ-ପ୍ରସଙ୍ଗିନା
ବସନ୍ତ-ଯୋଧଃ ସମୁପାଗତଃ ପ୍ରିୟେ । ୧ ।

ଦ୍ରୁମାଃ ସପୁଷ୍ପାଃ ସଲିଳଂ ସପଦ୍ମଂ
ସ୍ତ୍ରିୟଃ ସକାମାଃ ପବନଃ ସୁଗନ୍ଧିଃ ।
ସୁଖାଃ ପ୍ରଦୋଷା ଦିବସାଶ୍ଚ ରମ୍ୟାଃ
ସର୍ବଂ ପ୍ରିୟେ ! ଚାରୁତରଂ ବସନ୍ତେ । ୨ ।

ବାପୀଜଳାନାଂ ମଣିମେଖଳାନାଂ
ଶଶାଙ୍କଭାସାଂ ପ୍ରମଦାଜନାନାମ୍ ।
ଚୂତଦ୍ରୁମାଣାଂ କୁସୁମାନ୍ୱିତାନାଂ
ଦଦାତି ସୌଭାଗ୍ୟମୟଂ ବସନ୍ତଃ । ୩ ।

କୁସୁମ୍ଭରାଗାରୁଣିତୈର୍ଦୁକୂଳୈ-
ର୍ନିତମ୍ବବିମ୍ବାନି ବିଳାସିନୀନାମ୍ ।
ରକ୍ତାଂଶୁକୈଃ କୁଙ୍କୁମରାଗ-ଗୌରୈ-
ରଳଂକ୍ରିୟନ୍ତେ ସ୍ତନମଣ୍ଡଳାନି । ୪ ।

କର୍ଣ୍ଣେଷୁ ଯୋଗ୍ୟଂ ନବକର୍ଣ୍ଣିକାରଂ
ଚଳେଷୁ ନୀଳେଷ୍ୱଳକେଷ୍ୱଶୋକମ୍ ।
ପୁଷ୍ପଞ୍ଚ ଫୁଲ୍ଲଂ ନବମଲ୍ଲିକାୟାଃ
ପ୍ରୟାତି କାନ୍ତିଂ ପ୍ରମଦାଜନସ୍ୟ । ୫ ।

ସ୍ତନେଷୁ ହାରାଃ ସିତଚନ୍ଦନାର୍ଦ୍ରା
ଭୁଜେଷୁ ସଙ୍ଗଂ ବଳୟାଙ୍ଗଦାନି ।
ପ୍ରୟାନ୍ତ୍ୟନଙ୍ଗାତୁରମାନସାନାଂ
ନିତମ୍ବିନୀନାଂ ଜଘନେଷୁ କାଞ୍ଚ୍ୟଃ । ୬ ।

ସପତ୍ରଲେଖେଷୁ ବିଳାସିନୀନାଂ
ବକ୍ତ୍ରେଷୁ ହେମାମ୍ବୁରୁହୋପମେଷୁ ।
ରତ୍ନାନ୍ତରେ ମୌକ୍ତିକସଙ୍ଗରମ୍ୟଃ
ସ୍ୱେଦୋଦ୍‌ଗମୋ ବିସ୍ତରତାମୁପୈତି । ୭ ।

ଉଚ୍ଛ୍ୱାସୟନ୍ତ୍ୟଃ ଶ୍ଲଥବନ୍ଧନାନି
ଗାତ୍ରାଣି କନ୍ଦର୍ପ-ସମାକୁଳାନି ।
ସମୀପବର୍ତ୍ତିଷ୍ୱଧୁନା ପ୍ରିୟେଷୁ
ସମୁତ୍ସୁକା ଏବ ଭବନ୍ତି ନାର୍ଯ୍ୟଃ । ୮ ।

ତନୂନି ପାଣ୍ଡୂନି ସମନ୍ଥରାଣି
ମୁହୁର୍ମୁହୁର୍ଜୃମ୍ଭଣତତ୍ପରାଣି ।
ଅଙ୍ଗାନ୍ୟନଙ୍ଗଃ ପ୍ରମଦାଜନସ୍ୟ
କରୋତି ଲାବଣ୍ୟ-ସସମ୍ଭ୍ରମାଣି । ୯ ।

ନେତ୍ରେଷୁ ଲୋଲୋ ମଦିରାଲସେଷୁ
ଗଣ୍ଡେଷୁ ପାଣ୍ଡୁଃ କଠିନଃ ସ୍ତନେଷୁ ।
ମଧ୍ୟେଷୁ ନମ୍ରୋ ଜଘନେଷୁ ପୀନଃ
ସ୍ତ୍ରୀଣାମନଙ୍ଗୋ ବହୁଧା ସ୍ଥିତୋଽଦ୍ୟ । ୧୦ ।

ଅଙ୍ଗାନି ନିଦ୍ରାଲସବିଭ୍ରମାଣି
ବାକ୍ୟାନି କିଞ୍ଚିନ୍ମଦାଲସାନି ।
ଭ୍ରୂକ୍ଷେପଜିହ୍ମାନି ଚ ବୀକ୍ଷିତାନି
ଚକାର କାମଃ ପ୍ରମଦାଜନାନାମ୍ । ୧୧ ।

ପ୍ରିୟଙ୍ଗୁକାଳୀୟକକୁଙ୍କୁମାକ୍ତଂ
ସ୍ତନେଷୁ ଗୌରେଷୁ ବିଳାସିନୀଭିଃ ।
ଆଲିପ୍ୟତେ ଚନ୍ଦନମଙ୍ଗନାଭିଃ ।
ମଦାଲସାଭିର୍ମୃଗନାଭିଯୁକ୍ତମ୍ । ୧୨ ।

ଗୁରୂଣି ବାସାଂସି ବିହାୟ ତୂର୍ଣ୍ଣଂ
ତନୂନି ଲାକ୍ଷାରସରଞ୍ଜିତାନି ।
ସୁଗନ୍ଧିକାଳାଗୁରୁଧୂପିତାନି
ଧତ୍ତେଽଙ୍ଗନା କାମମଦାଲସାଙ୍ଗୀ । ୧୩ ।

ପୁଂସ୍କୋକିଳଶ୍ଚୂତରସାସବେନ
ମତ୍ତଃ ପ୍ରିୟାଂ ଚୁମ୍ବତି ରାଗହୃଷ୍ଟଃ ।
କୂଜନ୍ ଦ୍ୱିରେଫୋଽପ୍ୟୟମମ୍ବୁଜସ୍ଥଃ
ପ୍ରିୟଂ ପ୍ରିୟାୟାଃ ପ୍ରକରୋତି ଚାଟୁଃ । ୧୪ ।

ତାମ୍ର-ପ୍ରବାଳସ୍ତବକାବନମ୍ରା
ଶ୍ଚୂତଦ୍ରୁମାଃ ପୁଷ୍ପିତ-ଚାରୁ-ଶାଖାଃ ।
କୁର୍ବନ୍ତି କାମଂ ପବନାବଧୂତାଃ
ପର୍ଯ୍ୟୁତ୍ସୁକଂ ମାନସମଙ୍ଗନାନାମ୍ । ୧୫

ଆ ମୂଳତୋ ବିଦ୍ରୁମରାଗତାମ୍ରଂ
ସପଲ୍ଲବାଃ ପୁଷ୍ପଚୟଂ ଦଧାନାଃ ।
କୁର୍ବନ୍ତ୍ୟଶୋକା ହୃଦୟଂ ସଶୋକଂ
ନିରୀକ୍ଷ୍ୟମାଣା ନବଯୌବନାନାମ୍ । ୧୬ ।

ମତ୍ତଦ୍ୱିରେଫ-ପରିଚୁମ୍ବିତ-ଚାରୁ-ପୁଷ୍ପା
ମନ୍ଦାନିଳାକୁଳିତ-ନମ୍ର-ମୃଦୁ-ପ୍ରବାଳାଃ ।
କୁର୍ବନ୍ତି କାମିମନସାଂ ସହସୋତ୍ସୁକତ୍ୱଂ
ଚୂତାଭିରାମକଳିକାଃ ସମବେକ୍ଷ୍ୟମାଣାଃ । ୧୭ ।

କାନ୍ତାମୁଖ-ଦ୍ୟୁତିଜୁଷାମପି ଚୋଦ୍ଗତାନାଂ
ଶୋଭାଂ ପରାଂ କୁରବକ-ଦ୍ରୁମମଞ୍ଜରୀଣାମ୍ ।
ଦୃଷ୍ଟ୍ୱା ପ୍ରିୟେ ! ସହୃଦୟସ୍ୟ ଭବେନ୍ନ କସ୍ୟ
କନ୍ଦର୍ପ ବାଣ-ପତନ ବ୍ୟଥିତଂ ହି ଚେତଃ । ୧୮

ଆଦୀପ୍ତ-ବହ୍ନିସଦୃଶୈର୍ମରୁତାବଧୂତୈଃ
ସର୍ବତ୍ର କିଂଶୁକବନୈଃ କୁସୁମାବନମ୍ରୈଃ ।
ସଦ୍ୟୋ ବସନ୍ତ-ସମୟେ ହି ସମାଚିତେୟଂ
ରକ୍ତାଂଶୁକା ନବବଧୂରିବ ଭାତି ଭୂମିଃ । ୧୯ ।

କିଂ କିଂଶୁକୈଃ ଶୁକମୁଖଚ୍ଛବିଭିର୍ନ ଭିନ୍ନଂ
କିଂ କର୍ଣ୍ଣିକାରକୁସୁମୈର୍ନ କୃତଂ ନୁ ଦଗ୍ଧମ୍ ।
ଯତ୍କୋକିଳଃ ପୁନରୟଂ ମଧୁରୈର୍ବଚୋଭି-
ର୍ଯୂନାଂ ମନଃ ସୁବଦନାନିହିତଂ ନିହନ୍ତି । ୨୦ ।

ପୁଂସ୍କୋକିଳୈଃ କଳବଚୋଭିରୁପାତ୍ତହର୍ଷୈଃ
କୂଜଦ୍ଭିରୁନ୍ମଦକଳାନି ବଚାଂସି ଭୃଙ୍ଗୈଃ ।
ଲଜ୍ଜାନ୍ୱିତଂ ସବିନୟଂ ହୃଦୟଂ କ୍ଷଣେନ
ପର୍ଯ୍ୟାକୁଳଂ କୁଳଗୃହେଽପି କୃତଂ ବଧୂନାମ୍ । ୨୧ ।

ଆକମ୍ପୟନ୍ କୁସୁମିତାଃ ସହକାରଶାଖାଃ
ବିସ୍ତାରୟନ୍ ପରଭୃତସ୍ୟ ବଚାଂସି ଦିକ୍ଷୁ ।
ବାୟୁର୍ବିବାତି ହୃଦୟାନି ହରନ୍ନରାଣାଂ
ନୀହାରପାତବିଗମାଂ ସୁଭଗୋ ବସନ୍ତେ । ୨୨ ।

କୁନ୍ଦୈଃ ସବିଭ୍ରମବଧୂ-ହସିତାବଦାତୈ-
ରୁଦ୍ୟୋତିତାନ୍ୟୁପବନାନି ମନୋହରାଣି ।
ଚିତ୍ତଂ ମୁନେରପି ହରନ୍ତି ନିବୃତ୍ତରାଗଂ
ପ୍ରାଗେବ ରାଗମଳିନାନି ମନାଂସି ଯୂନାମ୍ । ୨୩ ।

ଆଲମ୍ବି-ହେମରଶନାଃ ସ୍ତନସକ୍ତହାରାଃ
କନ୍ଦର୍ପ-ଦର୍ପ-ଶିଥିଳୀକୃତ-ଗାତ୍ରଯଷ୍ଟ୍ୟଃ ।
ମାସେ ମଧୌ ମଧୁରକୋକିଳଭୃଙ୍ଗନାଦୈ-
ର୍ନାର୍ଯ୍ୟୋ ହରନ୍ତି ହୃଦୟଂ ପ୍ରସଭଂ ନରାଣାମ୍ । ୨୪ ।

ନାନାମନୋଜ୍ଞକୁସୁମଦ୍ରୁମଭୂଷିତାନ୍ତାନ୍
ହୃଷ୍ଟାନ୍ୟପୁଷ୍ଟ-ନିନଦାକୁଳ-ସାନୁଦେଶାନ ।
ଶୈଳେୟ-ଜାଲ-ପରିଣଦ୍ଧ-ଶିଳାତଳୌଘାନ୍
ଦୃଷ୍ଟ୍ୱା ଜନଃ କ୍ଷିତିଭୃତୋ ମୁଦମେତି ସର୍ବଃ । ୨୫ ।

ନେତ୍ରେ ନିମୀଳୟତି ରୋଦିତି ଯାତି ଶୋକଂ
ଘ୍ରାଣଂ କରେଣ ବିରୁଣଦ୍ଧି ବିରୌତି ଚୋଚ୍ଚୈଃ ।
କାନ୍ତା ବିୟୋଗ-ପରିଖେଦିତ-ଚିତ୍ତବୃତ୍ତି-
ର୍ଦୃଷ୍ଟ୍ୱାଧ୍ୱଗଃ କୁସୁମିତାନ୍ ସହକାରବୃକ୍ଷାନ୍ । ୨୬ ।

ସମଦମଧୁକରାଣାଂ କୋକିଳାନାଞ୍ଚ ନାଦୈଃ
କୁସୁମିତସହକାରୈଃ କର୍ଣ୍ଣିକାରୈଶ୍ଚ ରମ୍ୟଃ ।
ଇଷୁଭିରିବ ସୁତୀକ୍ଷ୍ଣୈର୍ମାନସଂ ମାନିନୀନାମ୍
ତୁଦତି କୁସୁମମାସୋ ମନ୍ମଥୋଦ୍‌ବେଜନାୟ । ୨୭ ।

ଆମ୍ରୀ-ମଞ୍ଜୁଳ-ମଞ୍ଜରୀ ବରଶରଃ
ସତ୍ କିଂଶୁକଂ ଯଦ୍ଧନୁ
ର୍ଜ୍ୟା ଯସ୍ୟାଳିକୁଳଂ କଳଙ୍କରହିତଚ୍ଛତ୍ରଂ
ସିତାଂଶୁଃ ସିତମ୍ ।

ମତ୍ତେଭୋ ମଳୟାନିଳଃ ପରଭୃତା
ଯଦ୍ ବନ୍ଦିନୋ ଲୋକଜିତ୍
ସୋଽୟଂ ବୋ ବିତରୀତରୀତୁ
ବିତନୁର୍ଭଦ୍ରଂ ବସନ୍ତାନ୍ୱିତଃ । ୨୮ ।

---